# ସେହି ରାତ୍ରି ମାୟାବିନୀ

ଅଧ୍ୟାପକ
ଶ୍ରୀ କାଳିନ୍ଦୀ ବେହେରା



# ମେଟ୍ରିକ-ମାଧ୍ୟମିକା

ଅଧ୍ୟାପକ : କାଳିନ୍ଦୀ ବେହେରା

ଫ୍ରେଣ୍ଡସ୍ ପବ୍ଲିଶର୍ସ

# ସେହିରାତ୍ର-ମାୟାବିନୀ

ଲେଖକ :
ଅଧ୍ୟାପକ କାଳିନ୍ଦୀ ବେହେରା

ପ୍ରକାଶକ :
**ସହଦେବ ପ୍ରଧାନ**
ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ :
ଡିସେମ୍ବର—୧୯୭୪

ପ୍ରଚ୍ଛଦପଟ :
**ଅସିତ ମୁଖାର୍ଜୀ**

ମୁଦ୍ରାକର :
**ମହାଲକ୍ଷ୍ମୀ ପ୍ରେସ**
ସାହେବଯାଦା ବଜାର, କଟକ-୨
ମୂଲ୍ୟ—**ଦଶ ଟଙ୍କା**

**SEHIRATRI MAYABINI**

Author :
**Kalindi Behera**

Publisher :
**Sahadev Pradhan**
Friends' Publishers
Binodbehari, Cuttack-753002
Orissa (India)

First Edition :
December—197[illegible]

Cover design :
**Asit Mukherjee**

Printer :
**Mahalaxmi Press**
Sahebzada Bazar, Cuttack-2

Price :
**Rs 10.00**

# ସୂଚୀପତ୍ର

# ସେହିରାତି-ମାୟାବିନୀ

ଆମେ ସେଦିନ ରାଉରକେଲାରେ ପହଞ୍ଚିବା ସମୟକୁ ରାତି ପ୍ରାୟ ୮ଟାରୁ ଉପରେ ହେବ । ସମଗ୍ର ଇସ୍ପାତ ନଗରୀରେ ରଙ୍ଗବେରଙ୍ଗର ବିଜୁଳି ଆଲୁଅ ସପ୍ତରଙ୍ଗୀ ଇନ୍ଦ୍ରଧନୁର ବର୍ଣ୍ଣାଢ଼୍ୟ ଶୋଭା ବହୁଦୂରରୁ ଆମକୁ କିପରି ଏକ ଅହେତୁକ ସମ୍ମୋହନ ଭିତରକୁ ସତେକି ଟାଣି ଟାଣି ନେଉଥିଲା । ମୁଁ ଦୂରରୁ ଦେଖୁଥିଲି ମୁଗ୍‌ଧ ଚକିତ ଭାବରେ ରୂପସୀ ରାଉରକେଲାର ମନମୋହିନୀ ରୂପ ଝଙ୍କାରକୁ । ଦୂରରୁ ଆଶ୍ଚର୍ଯ୍ୟ ଚକିତ ଭାବରେ ଦେଖୁଥିଲି ।

ଆମର ରହଣି କିନ୍ତୁ ସେଦିନ ରାଉରକେଲାର କୌଣସି Guest Houseରେ ନଥିଲା, ଥିଲା ଧାନଘୋଷ ସର୍କିଟ୍ ହାଉସ୍‌ରେ । ମୋ ମନରେ କିନ୍ତୁ ରାତିରେ ରାଉରକେଲା ଦେଖିବାର ପ୍ରବଳ ଆଗ୍ରହ । ଅହେତୁକ ଆକାଙ୍‌କ୍ଷା । ତେଣୁ ଅନ୍ୟମାନେ Official ଆଲୋଚନାରେ ମାତିଥିଲା-ବେଳେ ମୁଁ ଅନ୍ୟ ପଟରେ ଏକା ଏକା କଟ୍ଟିବାଟ ଆଗେଇ ଯାଇ ଚାହିଁଥିଲି ବିମୁଗ୍‌ଧ ଭାବରେ ରାଉରକେଲା ସହରକୁ—ତାର ବିଚିତ୍ର ରୂପ ପାଟବତାକୁ ।

"ବାବୁ"...

ଚମକିପଡ଼ି ପଛକୁ ଚାହିଁଲି । ମୋ ପଛରେ ଛିଡ଼ା ହୋଇଛନ୍ତି ସର୍କିଟ୍ ହାଉସର ବୁଢ଼ା ଚୌକିଦାର ଅନାଦି ।

"କ'ଣ ହେଲା । ମୋତେ କିଏ ଖୋଜୁଛନ୍ତି କି ?" ମୁଁ ଅତି ନିରୁପାୟ ଭାବରେ ଓଲଟା ପ୍ରଶ୍ନକଲି । •

"ନା ବାବୁ, ରାତିରେ ଏପଟକୁ କେହି ଆସନ୍ତି ନାହିଁ । ଯାଗାଟା ବାବୁ ଆଦୌ ଭଲ ନୁହେଁ ।" ଅନାଦିର ଶଙ୍କିତ ଉତ୍ତର ।

"ମାନେ ! କ'ଣ ସାପ ବଢ଼ୁଡ଼ ଅଛନ୍ତି କି ଏଠି ?" ଫେରୁ ଫେରୁ ମୁଁ ପ୍ରଶ୍ନ କଲି ।

"ନା ବାବୁ । ସାପ ବେଙ୍ଗ କଥା ନୁହେଁ । ରାତିରେ ଏ ଫାଶିଦିଆ ଗଛ ପାଖକୁ କେହି ଆସନ୍ତି ନାହିଁ ।" ଅନାଦିର କଣ୍ଠସ୍ୱର ସନ୍ଦେହ ଭୟରେ ଥରୁଛି ।

"ଫାଶିଦିଆ ଗଛ ।" ମୋ ମନରେ ଅସୀମ କୌତୂହଳ ।

"ହଁ ବାବୁ । ଅନେକଦିନ ତଳର କଥା । ଏ ବଙ୍ଗଳା ତିଆରି ହେବା ସମୟରେ ଜଣେ ଯବାନଝିଅ ଏଇ ଗଛରେ ଦଉଡ଼ି ଲଗେଇ ମରିଥିଲା । ସେଇଦିନୁ ଏ ଗଛର ନାମ ଫାଶିଦିଆ ଗଛ ରହି ଆସିଛି । ରାତି ନିସ୍ତବ୍ଧ ହେଲେ ଆମେ ଶୁଣିଛୁ ବାବୁ । କିଏ ସତେ ଯେପରି ଏଠି ବୁଲେ । କଇଁ କଇଁ ହୋଇ କାନ୍ଦେ । ତେଣୁ ବେଶୀ ରାତି ହେଲେ କେହି ଏପଟେ ଦେଇ ଆସନ୍ତି ନାହିଁ । ତମେ ନୂଆ ଲୋକ ବାବୁ । ଆସ···

ଭୂତପ୍ରେତ ପ୍ରତି ମୋ ମନରେ କେବେ ଭୟ ନଥିଲା କି ଅନାଦି କଥାରେ ମୋ ମନରେ କୌଣସି ଭୀତି ସଞ୍ଚାର ବି ହେଉ ନଥିଲା । ତେବେ ବି ଅନାଦିର ଆଗ୍ରହ ଭାଙ୍ଗି ନପାରି ମୁଁ ଅନାଦି ସଙ୍ଗରେ ଫେରି ଆସିଥିଲି । ମନରେ ମୋର ନାନାପ୍ରକାର କୌତୂହଳ । କିଏ ସେହି ନବଯୁବତୀ ! କାହିଁକି ଦଉଡ଼ିଲଗାଇ ଆତ୍ମହତ୍ୟା କରିଥିଲା । ସତରେ କ'ଣ ନିସ୍ତବ୍ଧ ରାତିରେ ଏ ସର୍କିଟ ହାଉସକୁ ଘେରି ତାର ଅତୃପ୍ତ ଆତ୍ମା ଘୂରି ବୁଲୁଛି । ନାନା ଆଶା ଆଶଙ୍କାର ଆନ୍ଦୋଳନ ଭିତରେ ମନମୋର ଅସ୍ଥିର ହୋଇ ପଡୁଥାଏ । ଅନାଦିଠାରୁ ସବୁକଥା ଶୁଣିବାକୁ ମନରେ ଖୁବ୍ ବ୍ୟଗ୍ରତା ପ୍ରକାଶ ପାଉଥାଏ । ମାତ୍ର ଦିନଯାକର ପ୍ରବଳ ପରିଶ୍ରମ ପରେ ଖାଇସାରି ବିଛଣା ଧରୁ ଧରୁ ମୋତେ ଖୁବ୍ ଜୋରରେ ନିଦ ହୋଇଗଲା । ରାତିରେ ଶୋଇ ପଡ଼ିଲେ ସାଧାରଣତଃ ମୋର ନିଦ ସହଜରେ ଭାଙ୍ଗେ ନାହିଁ । ସେଦିନ କିନ୍ତୁ କାହିଁକି ରାତି ଅଧରେ ମୋର ନିଦ ଭାଙ୍ଗିଗଲା । କିପରି ଏକ ଅସ୍ୱାଭାବିକ ଶବ୍ଦରେ ମୁଁ ବିହ୍ୱଳିତ ହୋଇପଡ଼ିଲି । ଆଖି ମଳି ମଳି ମୁଁ ଚାହିଁଲି ଚାରିଆଡ଼େ,

ସବୁ ନିସ୍ତବ୍ଧ, ନିଥର—ଏତେ କର୍ମସୁଖର ସ୍ଥାନଟା ନିଘୋଡ଼୍ ନିଦରେ ସତେକି ଶୋଇ ପଡ଼ିଛି । ଶୋଇବା ପୂର୍ବରୁ ମୋର ମନେ ଅଛି ମୁଁ Bedlight ଦେଇ ଶୋଇଥିଲି କିନ୍ତୁ ସେଇଟା କେତେବେଳେ ଲିଭିଯାଇଛି । line ଫେଲ୍ କରିକି ଆଉ ? ନା ତ, ଫୁଲ୍ ସ୍ପିଡ୍‌ରେ ଫ୍ୟାନ୍‌ଟା ବୁଲୁଛି । ତେବେ ଲାଇଟଟା ଲିଭେଇ ଦେଲା କିଏ ? ଅନାଦିର କଥା ମନେ ପଡ଼ି ଜମର ଦେହଟା ଶୀତେଇ ଉଠିଲା । ଧୀରୁ ଆଖି ଖୋଲି ଚାହିଁଲି ଝରକା ଦେଇ, ସବୁଆଡ଼ ଅନ୍ଧାର । ନିଚ୍ଛୁମ କଳା ଅନ୍ଧାର । କାହିଁ କେଉଁ ଦୂରରୁ ପାନପୋଷ ବଜାରର Light, ଡାହାଣୀ ଆଲୁଅଭଳି ଜଳୁଛି ଲିଭୁଛି । ଆକାଶଟା ପୂରାପୂରି କଳା ମେଘରେ ଢାଙ୍କି ହୋଇରହିଛି । ଏଇ ନିକଟରେ ବର୍ଷା ହେବ କି ବର୍ଷା ଆସନ୍ନ ହୋଇ ଗ୍ଲୁଡ଼ିଯାଇଛି । ଅନେକ ରାତିରେ ଏକା ଏକା ବୁଲିବା ମୋର ପ୍ରାୟ ଦୈନନ୍ଦିନ ଅଭ୍ୟାସ । କିନ୍ତୁ କେବେ ତ କାହିଁକି ଏପରି ଭୟ ମୁଁ ପାଇ ନଥିଲି । ଧୀରୁ ଆଖିଟୋକି ମୁଁ ପୁଣି ଚାହିଁଲି ଘରଆଡ଼କୁ । କାହିଁ କେହି ତ ଦେଖାଯାଉ ନାହିଁ । ତେବେ ମୋର ନିଦ ଆକସ୍ମିକ ଭାବରେ ଭାଙ୍ଗିଗଲା କାହିଁକି ?

ଝରକା ଦେଇ ଫାଶିଦିଆ ବରଗଛଟା ସମ୍ପୂର୍ଣ୍ଣ ଅନ୍ଧାରରେ କପରି ଏକ ଭୟଙ୍କର ରାକ୍ଷସଭଳି ମୋତେ ସତେକି ଚାହିଁ ରହିଛି । ମୋ ଦେହଟା ଅସ୍ୱାଭାବିକ ଭାବରେ ଥରିବାକୁ ଲାଗିଲା । କଣ୍ଠଟା ଅଠା ଅଠା ହୋଇଗଲା ।

"ବାବୁ"—ମୋର ଖୁବ୍ ନିକଟରେ ଏକ ଦରଦୀ ନାରୀ କଣ୍ଠର ଝଙ୍କାର ।

"କିଏ ?" ଚମକି ପଡ଼ି ମୁଁ ଘରଆଡ଼େ ଚାହିଁଲି । କେହି କୁଆଡ଼େ ଦେଖା ଯାଉନାହିଁ । ତେବେ, ତେବେ ଅନାଦି କଥା କ'ଣ ସତ ? ହେଇ ଅନାଦି ଯୁଗରୁ ଆତ୍ମହତ୍ୟା କରିଥିବା ସେହି ଯୁବତୀଟିର ଅତୃପ୍ତ ଆତ୍ମା କଣ ସତରେ ଏ ବଙ୍ଗଳାକୁ ଘେରି ଘୁରି ବୁଲୁଛି ? ମୁଁ ଥରୁଥିଲି । ଭୟରେ ଆତଙ୍କରେ ମୁଁ ସମ୍ପୂର୍ଣ୍ଣ ଝାଳରେ ଭିଜିଯାଉଛି ସତେ କି ?

"ଛି, ମୋତେ ଡରୁଚ୍ଛ ବାବୁ । ମୁଁ, ମୁଁ ତୋର ମହୁଆ···" ଅଶରୀରୀ କଣ୍ଠରେ ଗଭୀର ଆନ୍ତରିକତା ।

"ତୁ-ତୁ କୋ-ଉ-ମ-ହୁ-ଆ" ? ଭୟରେ ପାଟିରୁ କଥା ବାହାରୁ ନଥିଲା ସତେକି ।

"ଏତେଦିନ ପରେବି ତୋର ଭୟ ଗଲାନି ବାବୁ ?" ଖିଲ୍ ଖିଲ୍ ହୋଇ ହସି ଉଠିଲା ଅଶରୀର ଆତ୍ମା ।

ମୁଁ ସତେକି ଜ୍ଞାନଶୂନ୍ୟ ହୋଇଯିବି । ଏ କି ଭୌତିକ କାଣ୍ଡ । ଶୂନ୍ୟରେ କିଏ ଏପରି ମୋ ପାଖରେ କଥା କହୁଛି । ପାଖରୁ ଜଣେ ମଣିଷର ନିଶ୍ୱାସ ଶବ୍ଦ ମୁଁ ଶୁଣୁଛି । ତା କଥା ମୁଁ ଶୁଣୁଛି । ଘର ଭିତରେ ଚଳପ୍ରଚଳ କରିବାର ତାର ସମସ୍ତ ଆଭାସ ମୁଁ ପାଉଛି । ହେଲେ ସେ କିଏ ? କୋଉଠୁଁ ସେ କଥା କହୁଛି । ମୋ ମୁଣ୍ଡ ଉପରେ ଟର୍ଚ୍ଚଟା ଅଛି । କିନ୍ତୁ ଟର୍ଚ୍ଚ ପାଖକୁ ହାତ ବଢ଼େଇବାକୁ ବି ମୋର ସାହସ କୁଳଉନାହିଁ ।

"ତେବେବି ମୋତେ ଚିହ୍ନି ପାରୁନୁ ବାବୁ । ତୋର ଅପେକ୍ଷାରେ କେତେ ଯୁଗଧରି ମୁଁ ଏଠି ଅପେକ୍ଷା କରି ରହିଛି । କେତେ ଝଡ଼ବତାସ ଖରା କାକର ସହି ଏଇଠି ପଡ଼ି ରହିଛି । ଏତେ ଦିନେ ତୁ ଆଇଲୁ ଯେ, ମୋତେ ଚିହ୍ନି ପାରୁନୁ । ମେ ପାଟି ବାରିପାରୁନୁ । 'ହଉ ବାବୁ' ଅଭିମାନ ଭରା କଣ୍ଠରେ ଅଶରୀର କଥା କହୁ କହୁ କାନ୍ଦି ପକାଇଲା ସତେକି ।

"ତୁ କିଏ··· ତୁ—ତୁ କେଉଁଠୁ କଥା କହୁଛୁ ?" ଭୟାର୍ତ୍ତ ପ୍ରଶ୍ନ ମୋର ।

"ମୁଁ ମହୁଆ ବାବୁ ! ତୋର ମହୁଆ । ତୋର ପାଇଁ ମୁଁ ଏ ଗଛରେ ଫାଶିଦେଇ ଝୁଲିଥିଲି । ତୁ ତୋ ମହୁଆକୁ ଚିହ୍ନିପାରିଲୁ ନାହିଁ ! ବାବୁ ଏତେ ଶୀଘ୍ର ଭୁଲିଗଲୁ ମୋତେ । ତୋ ମହୁଆକୁ ତୁ ଭୁଲିଗଲୁ ବାବୁ ।" କହିଁ କହିଁ ହୋଇ କାନ୍ଦି ଉଠିଲା ସତେକି ମହୁଆ ।

ମୋତେ ଖୁବ୍ ଆଶ୍ଚର୍ଯ୍ୟ ଲାଗୁଥିଲା, ଭୟବି । କି ଅସମ୍ଭବ କଥା କହୁଛି ମହୁଆ । ମହୁଆ ଆତ୍ମହତ୍ୟା କଲାବେଳକୁ ମୋର ଜନ୍ମବି ହୋଇ ନ ଥିଲା । ଆଉ ଏ କହୁଛି, ମୁଁ ଅନୁଭବ କଲି ଭୟରେ ବିମୂଢ଼ ହୋଇ ଯିବାକୁ । ଏହା ମହୁଆର ଅତୃପ୍ତ ଆତ୍ମା ମୋତେ ସମ୍ମୋହିତ କରି ଗଛତଳକୁ ନେଇ ହତ୍ୟା କରିବାକୁ ଚାହୁଁଛି ନିଶ୍ଚୟ । ଅତି ବିକଳରେ ମୁଁ ଏଣେ ତେଣେ ଚାହିଁଲି । କିନ୍ତୁ କାହାକୁ ଆଉ ଆଶ୍ରୟ ଦାତା ଭାବରେ ପାଇଲିନାହିଁ । ତେବେ ମୋର ମୃତ୍ୟୁ କ'ଣ ନିଶ୍ଚିତ । ଏତେ ଶୀଘ୍ର ଏ ଅପମୃତ୍ୟୁରେ ପଡ଼ି ମୋର ଜୀବନ ଚାଲିଯିବ । କାହିଁ କେଉଁ ଯୋଜନ ଦୂରରେ ମୋର ସ୍ତ୍ରୀ

ମୋର ପିଲାଏ ମୋ ବାଟ ଚାହିଁ ବସିଥିବେ । ତେବେ ଏ ଡାଆଣୀ ମୋ ପଛରେ ଚଢ଼ିଲା କାହିଁକି ?

"ଜମା ମୋର କିଛି ଦୋଷ ନାହିଁ । ମୋତେ କ୍ଷମାକର । ମୁଁ ତୁମ ଆତ୍ମହତ୍ୟା ପାଇଁ ଦାୟୀ ନୁହେଁ । ତୁମେ ଆତ୍ମହତ୍ୟା କଲାବେଳକୁ ମୋର ଜନ୍ମବି ହୋଇ ନଥିଲା ।"

"ମୁଁ ଜାଣେ ବାବୁ ସବୁ ଜାଣେ । ସବୁ ପୁରୁଷଙ୍କ ଭଳି ତମେବି ମୋତେ ଠକିବାକୁ ବସିଛ ।" ମହୁଆର କଣ୍ଠସ୍ୱର କିପରି ବେଦନାର୍ତ୍ତ ଶୁଭୁଥିଲା ।

"ମୋତେ ବିଶ୍ୱାସ କର । ତୁମ ଆତ୍ମହତ୍ୟା ସମୟକୁ ମୁଁ ଜନ୍ମବି ହୋଇ ନଥିଲି ।" ମହୁଆର ଆତ୍ମପ୍ରତ୍ୟୟ ଆଣିବାକୁ ମୁଁ ଚେଷ୍ଟା କରୁଥିଲି ।

"ଏ କ'ଣ ଏ ଯୁଗର କଥାବାବୁ, ତୁମ ଆରଜନ୍ମର କଥା ।"

ମହୁଆ ଜନ୍ମାନ୍ତରବାଦ କଥା କହୁଛି । ଆର ଜନ୍ମରେ ମୁଁ ତାର କ'ଣ କ୍ଷତି କରିଛି ବୋଲି ଏ ଜନ୍ମରେ ସେ ମୋ ଉପରେ ପ୍ରତିଶୋଧ ନେବ ? ନା, ନା," ଖୁବ୍ ଶଙ୍କିତ ହୋଇପଡ଼ିଲି ମୁଁ ।

"ମୋର ସେସବୁ କିଛି ମନେ ନାହିଁ । ଜନ୍ମାନ୍ତରବାଦରେ ମୁଁ ବିଶ୍ୱାସ କରେନି ।" କ୍ରମଶଃ ମୁଁ ଦୃଢ଼ ହେବାକୁ ଚେଷ୍ଟା କରୁଥିଲି ।

"ଛି, ଛି, ହିନ୍ଦୁ ହୋଇ ଜନ୍ମାନ୍ତରବାଦରେ ବିଶ୍ୱାସ କରୁନ । ତମେନା, ମୁଁ ଖ୍ରୀଷ୍ଟିୟାନ ହେବାକୁ ବସିବାରୁ ବାରଣ କରିଥିଲ । ତମେନା ମୋତେ ଗୀତା ଛୁଆଇଁ ଶପଥ କରାଇଥିଲ···କିଛି ମନେ ପଡୁନି ତୋର ବାବୁ ?" ମୋତେ ଓଡ଼ିଆ କହିଆସୁ ନ ଥିଲା, ତମେନା ମୋତେ ଓଡ଼ିଆ ଲେଖିପଢ଼ି ଶିଖାଇଥିଲ ?"

"ନା—ମୋର କିଛି ମନେ ପଡ଼ୁନି ।" ସତେକି ମୁଁ କାନ୍ଦି ପକେଇବି । ମୋ ନିଜ କଣ୍ଠସ୍ୱର ମୋତେ କିପରି ଅଚିହ୍ନା ଅଚିହ୍ନା ଲାଗୁଥିଲା ।

"ମୋତେ ଡରନା ବାବୁ । ତୋର ଯଦି କିଛି ମନେ ନ ପଡ଼ୁଛି ନ ପଡ଼ୁ । ମୁଁ ମୋର ଯାଉଛି । ତୋର ମୁଁ କିଛି ଅନିଷ୍ଟ କରିବିନି ବାବୁ । ତୁ ପରା ମୋର ଆଶ୍ରୟଦାତା ଥିଲୁ ।" ମହୁଆ କହୁଥିଲା ସତେକି ।

ମୁଁ କିଛି ଭାବିପାରୁ ନ ଥିଲି । କିଛି ଚିନ୍ତା ବି କରିପାରୁ ନ ଥିଲି । କ'ଣ ଏସବୁ ହୋଇଯାଉଛି । କ'ଣ ଏସବୁ କହିଯାଉଛି ଅଶରୀରୀ ଆତ୍ମା । ଆଖି ମଳି ମଳି ମୁଁ ପୁଣି ଚାହିଁଲି । କାହିଁ କେଉଁଠିତ କିଛି ଦେଖାଯାଉ ନାହିଁ । ତେବେ ଏ ସ୍ୱର ଆସୁଛି କେଉଁଠୁ ? ବିମୂଢ଼ ବିସ୍ମୟ ନେଇ ମୁଁ ଚାହିଁଲି ଚାରିଆଡ଼କୁ ?

'ମୋତେ ଦେଖିବୁ ବାବୁ—ମୋତେ ଦେଖିଲେ ତୁ ନିଶ୍ଚେ ଚିହ୍ନିବୁ ।'

ବେଡ଼୍ ସୁଇଚଟା କିଏ ଦେଇଦେଲା ଏବଂ ସାରା ଅନ୍ଧାରଟା ସେହି ନୀଳାଭ ଆଲୋକରେ ଅପସାରିତ ହୋଇଗଲା । ସେହି ସ୍ତିମିତ ଆଲୋକ ଭିତରେ ମୁଁ ଦେଖିଲି କବାଟକୁ ଧରି ଛିଡ଼ା ହୋଇଛି ଯୁବତୀଟିଏ । ଦେହରେ ଭରା ଯୌବନର ସମ୍ଭାର । ସ୍ୱାସ୍ଥ୍ୟରେ ପୂରିରହିଛି ଅସମ୍ଭବ ତାରୁଣ୍ୟ । ବନ୍ୟ ଆଦିବାସୀ ଯୁବତୀର ନିଟୋଳ ଶରୀର ଦେଖି ମୁଁ ବିସ୍ମୟ ବିସ୍ଫାରିତ ନେତ୍ରରେ ଅନେଇ ରହିଲି ତାକୁ । ହାତଗୋଡ଼ ସବୁ ମୋର ଅବଶ ହୋଇପଡ଼ୁଛି ସତେକି । ଦେହରୁ କ୍ରମଶଃ ସମସ୍ତ ଜୀବନସତ୍ତା ସତେକି ଚାଲିଯିବ । ମୋ ଆଖି ଆଗରେ ଅପରୂପ ରୂପଲାବଣ୍ୟ ନେଇ ଠିଆ ହୋଇଥିବା ଆଦିବାସୀ ଯୁବତୀ ମହୁଆ ନାହିଁ । ଅଛି ତାର ପ୍ରେତାତ୍ମା । ମୋତେ ଶେଷ କରିବାକୁ ସେ ଆସିଛି । ମୁଁ ଅତି ବିକଳରେ ତାକୁ ଚାହିଁଲି ।

"ଛି ବାବୁ ! ମୋତେ ଡରୁଚୁ । ମୁଁ ତୋର କିଛି କ୍ଷତି କରିବିନାହିଁ । ତୁ ଯେତେବେଳେ ମୋତେ ଚିହ୍ନି ପାରୁନୁ ।" କାନ୍ଦି ପକାଇଲା ମହୁଆ ।

"ମୋତେ ବିଶ୍ୱାସ କର ମହୁଆ । ମୁଁ ତୁମକୁ ଆଦୌ ଚିହ୍ନେନା । ମୁଁ ଆଜି ପ୍ରଥମଥର ପାଇଁ ପାନପୋଷ ଆସିଛି···" ମୁଁ ମହୁଆର ପ୍ରେତାତ୍ମାକୁ ବୁଝେଇବାକୁ ଚେଷ୍ଟା କରୁଥିଲି ।

"ଏ କ'ଣ ଏ ଜନ୍ମର କଥା ଯେ ତୁ ମନେରଖିବୁ ବାବୁ । ତୁ ଭଲକରି ମନେପକା । ଭଗୀ ଓରାମ, ବୁଢ଼ା ଚୌକିଦାର । ମୁଁ ତାର ଚତୁର୍ଥ ପକ୍ଷର କନିଆଁ···।

ମୁଁ କିଛି ମନେ ପକାଇବାକୁ ଖୁବ୍ ଚେଷ୍ଟା କରୁଥିଲି । କିନ୍ତୁ ମୋର କିଛି ମନେପଡ଼ୁ ନ ଥିଲା । କୋଉ ଭାଗୀ ଓରାମ, କୋଉ ଚୌକିଦାର । ଏ କିପରି ତାର ଚତୁର୍ଥ ପକ୍ଷର ସ୍ତ୍ରୀ ମୁଁ ସତେ ଯେପରି ବୃତ୍ତୀଅଣିତାନ୍ଦ ଭିତରେ ପଡ଼ି ବଞ୍ଚିବାକୁ ବିକଳରେ ଧୁକୁଡ଼ୁଛି । ମୋର ସମସ୍ତ ଜୀବନଟା ସତେକି ସର ସର ଅଟୁଛି । ମୁଁ ଅତି ବିକଳରେ ଚାହିଁଲି ମହୁଆର ପ୍ରେତାତ୍ମା ଆଡକୁ ।

"ତୁ ଯଦି କିଛି ମନେ ପକାଉନେ ନ ପକା ବାବୁ ହେଲେ ଏପରି ବିକଳରେ ମୋତେ ଅନାନା । ତୋ ଆଖିରେ କ'ଣ ଅଛି କେଜାଣି ତୋ ଆଖିକୁ ଚାହିଁଲେ ମୁଁ ପାଗଳ ହୋଇଯାଏ । ସେତେବେଳେ ତୋର ଯୋଡ଼ ଆଖି ଅଜବ ତୋର ଠିକ୍ ସେହି ଆଖିର ଚାହାଁଣୀ ।"

ମୁଁ ମୋ ହାତକୁ ନିଜେ ଚିମୁଟି ଦେଖିଲି । କାହିଁ ମୁଁ ସ୍ୱପ୍ନ ଦେଖୁ ନାହିଁତ ? ମୁଁ ମହୁଆର ପ୍ରେତାତ୍ମା ପ୍ରେମରେ ପଡ଼ିଯାଇନେତ । ନା, ମୁଁ ତ ବଞ୍ଚିଛି । ତେବେ ଯେଉଁ ପ୍ରେତାତ୍ମାକୁ ମୁଁ ଏଇ ଟିକକ ଆଗରୁ ଏତେ ଡରୁଥିଲି । ଆଜି ମୋତେ ଡରଲାଗୁ ନାହିଁ କାହିଁକି ? କ୍ରମଶଃ ଯେପରି ମୁଁ ସେ ପ୍ରେତାତ୍ମା ପ୍ରତି ଆକୃଷ୍ଟ ହୋଇପଡ଼ୁଛି । ମୋ ମନରେ ତା ପ୍ରତି କିପରି ଅସମ୍ଭବ ସମ୍ମୋହନ ସୃଷ୍ଟି ହେଉଛି । ଅନ୍ୟ ମୁହୂର୍ତ୍ତରେ ଭାବୁଛି ଏ ରାକ୍ଷସୀ ମୋତେ ଭୁଲେଇ ହତ୍ୟା କରିବାକୁ ଚାହୁଁଛି । ତେବେ ବି ଏ ମନରେ ଏ ପରିବର୍ତ୍ତନ କାହିଁକି ? ହେ ଭଗବାନ ! ମୋତେ ରକ୍ଷାକର । ମୋତେ ମୋ କୁନି ପାଖକୁ ଫେରାଇନିଅ । ସତରେ ମୁଁ ପାଗଳ ହୋଇଯିବି ନା କ'ଣ ? ଏକ ଦିଗରେ ପ୍ରେତାତ୍ମାର ଆକର୍ଷଣ ଅନ୍ୟ ଦିଗରେ ଘର କଥା । ମୁଁ ଏ ଦୁଇ ଦ୍ୱନ୍ଦ୍ୱ ଭିତରେ କେବଳ ବିକଳ ପ୍ରାର୍ଥନା କରିବାକୁ ଲାଗିଲି ।

"ବାବୁ, କିଛି କହିବାକୁ । ଏତେଦିନ ପରେ ଦେଖା ମିଳିଲା ଯେ ତୁ ମୋତେ ଭଣ୍ଡି ଦେଉଛୁ ।"

"ନା ମହୁଆ, ମୋର କିଛି ମନେପଡ଼ୁନି ।"

"ମନେପକା ବାବୁ, ତୁ ଏଠିକି ନୂଆ ଅଫିସର ହୋଇ ଆସିଥାଉ । ସେଠି ନୂଆଘର ତିଆରି ହେଉଥାଏ । ତୋ ଚୌକିଦାର ଥାଏ ବୁଢ଼ା ଭାଗୀ ଓରାମ । ମୋତେ ଯୋରଜବରଦସ୍ତି ନିଜର ସ୍ତ୍ରୀକରି ରଖିଥାଏ ।"

"ହଁ, ହଁ, ମନେ ପଡ଼ିଲା" ମୁଁ ଆନନ୍ଦରେ ଚିତ୍କାର କରିଉଠିଲି । ସତେକି ଖଟରୁ ଡେଇଁପଡ଼ି ମହୁଆକୁ ଆଲିଙ୍ଗନ କରିବାକୁ ଧାଇଁଲି । କିନ୍ତୁ ମହୁଆ ଶୂନ୍ୟରେ ମିଳେଇଗଲା ଯେପରି ।

"ଛି ବାବୁ, ଘରେ ତୋର ପିଲାଛୁଆ । ତୁ ମୋତେ ଛୁଇଁବୁ, ମୁଁ ଯେ ଅଶେଷା ।"

ମୁଁ ହତାଶରେ ଫେରିଆସି ପୁଣି ଖଟଉପରେ ବସିପଡ଼ିଲି । ମୋର ଅର ଜୀବନର ହବୁକଥା ଗୋଟି ଗୋଟି ଯେପରି ମୋ ଆଖିଆଗରେ ନାଚି ନାଚି ଯାଉଛି । ମୁଁ ଅସ୍ପୃତାର ସହ ଡାକିଲି "ମହୁଆ ।"

"ହଁ, ମୁଁ ଏଇଠି ଅଛି ବାବୁ । ତୁ କହ, ତୋ ମୁହଁରୁ ପଛକଥାଗୁଡ଼ିକ ଶୁଣିଲେ ମୋତେ ଖୁବ୍ ଭଲ ଲାଗିବରେ ବାବୁ । ତୁ କହ..."

ହଁ, ମୁଁ ସେତେବେଳେ ନୂଆ ଓଭରସିଅର ଭାବରେ ଏଇଠି ଜଏନ୍ କରିଥାଏ । ବୁଢ଼ା ଭାଗୀ ଓରାମ ଭାରି ବିଶ୍ୱାସୀ ଲୋକ । ମୋପାଇଁ ରୋଷେଇ କରୁଥାଏ । ମୋର ସମସ୍ତ ବୋଲହାକ ଶୁଣେ । କିନ୍ତୁ ସଞ୍ଜହେଲେ ସେ ଆଉ ରହେନା ମୋ ପାଖରେ । ଚାଲିଯାଏ ତା ଘରକୁ । ଘରେ ତା'ର ଅପରୂପ ରୂପବତୀ ଚତୁର୍ଥ ପକ୍ଷର ଯୁବତୀ ନାରୀ । ବୁଢ଼ାର ଅନୁପସ୍ଥିତିରେ କିଏ କାଳେ ତା ଘରକୁ ସନ୍ଧ୍ୟାର ଅନ୍ଧକାରରେ ଅଭିସାର ପାଇଁ ଆସିଯିବ । ଏହି ଭୟ ସବୁବେଳେ ବୁଢ଼ାକୁ ଅସ୍ଥିର କରୁଥାଏ । ବୁଢ଼ା ମଦଖାଏ ପ୍ରଚୁର । ଆଉ ମୁଁ ଶୁଣିଛି ଟିକେ ଟିକେ କଥାରେ ତାର ଯୁବତୀ ସ୍ତ୍ରୀକୁ ପିଟାପିଟି କରେ ସେ ।

ସେଦିନ ମୁଁ ବ୍ରାହ୍ମଣୀକୂଳରୁ ଫେରୁଛି । ଆକାଶରେ ଭରା ଜହ୍ନର ଯାଦୁକରୀ ସ୍ପର୍ଶ ରୂପବତୀ ବ୍ରାହ୍ମଣୀକୁ ସତେ ଯେପରି ଫୁଲ ଶେଜରେ ସଜାଇଛି । ମନରେ ମୋର ପ୍ରବଳ ଆଲୋଡ଼ନ । ବ୍ରାହ୍ମଣୀର ବର୍ଣ୍ଣାଢ୍ୟ ରୂପ ମୋତେ ବିମୋହିତ କରୁଛି । ପାଗଳ କରୁଛି ସତେକି । ଅନ୍ୟ ମନସ୍କଭାବରେ ମୁଁ ଆସୁଛି । ନାରୀ କଣ୍ଠର କରୁଣ ଚିତ୍କାରରେ ଥମକି ଛିଡ଼ାହେଲି । ମୋର ଚୌକିଦାର ଭାଗୀ ଓରାମଘରୁ ଏ ଚିତ୍କାର ଆସୁଥିଲା । ମାନବିକତାର ଆକର୍ଷଣରେ ମୁଁ ସତରେ ଟାଣିହୋଇ ପଶିଗଲି ଓରାମର

ଘର ଭିତରକୁ । ଆଖି ଆଗରେ ଯେଉଁ ବୀଭତ୍ସ ଦୃଶ୍ୟ ଦେଖିଲି ସେଥିରେ ବିସ୍ମୟ ବିମୂଢ଼ ହୋଇ ରହିଗଲି । ଓଗ୍ରାମ ଆଗରେ ତାର ଚତୁର୍ଥ ପକ୍ଷର ଯୁବତୀ ସ୍ତ୍ରୀ ପ୍ରାୟ ଉଲଗ୍ନ ହୋଇପଡ଼ି ମାଡ଼ରୁ ରକ୍ଷା ପାଇବାକୁ ଚିତ୍କାର କରୁଥାଏ, ଆଉ ଓଗ୍ରାମ ନିଶା ଜୋରରେ ଅତି ନିର୍ମମ ଭାବରେ ତାକୁ ପିଟି ଚାଲିଥାଏ । ମୁଁ ଓଗ୍ରାମଠାରୁ ବାଡ଼ିଟା ଛଡ଼େଇ ଆଣି ଦୂରକୁ ଫିଙ୍ଗିଦେଇ ଓଗ୍ରାମକୁ ଖୁବ୍ ଜୋରରେ ଗୋଟାଏ ଧକ୍କା ଦେଲି । ଓଗ୍ରାମ ଛିଟିକି ଯାଇଁ ଦୂରରେ ପଡ଼ିଲା । ନିଶାଢୋଳା ନାଲିଆଖି ଟେକି କିପରି ଅସ୍ୱାଭାବିକ ଭାବରେ ମୋତେ ଅନେଇ ରହିଲା ।

"ତୁ ଜାଣିନୁ ବାବୁ ! ଏ ଖାନ୍କୀ ପକ୍କା ବଜାରୁ ଅଛି । ଯା'ର ମା ଗୋଟାଏ ଫିରଙ୍ଗି ପାଲରେ ପଡ଼ି ଘରଗୃହ ଛାଡ଼ିଥିଲା । ଏଇଟା ସେହି ଫିରଙ୍ଗି ଆଉରି ଛୁଆ । ଦେଖିନୁ ବାବୁ ତା ରଙ୍ଗ କପରି ? ଆମ ଓଗ୍ରାମ ଛୁଆ ଭଳି ଦେଖାଯାଉଛି ? ଏ ଶାଳୀ ବି ସେମିତି ହେଲାଣି— ରୂପ ଦେଖାଉଛି । ମୁଁ ଘରେ ନ ଥିଲେ ପରଧିଇତା କରୁଛି । ତୁ ଛାଡ଼ ବାବୁ ! ମୁଁ ଏ ଖାନ୍କୀକୁ ଶେଷ କରିଦିଏ···।"

"ନା ବାବୁ ନା, ଏସବୁ ମିଛ କଥା । ମୁଇଁ କାକେ ନାଇଁ ଡାକବାର । ଆମକୁ ବଞ୍ଚାଅ ବାବୁ ନାଇଁତ ଏ ଆମକୁ ମାରି ମାରି ମାରିଦେବ···।" ମୋ ଗୋଡ଼ ଧରିପକେଇଲା ଭାଗୀ ଓଗ୍ରାମର ଚତୁର୍ଥ ପକ୍ଷର ସ୍ତ୍ରୀ । ସତେ ଯେପରି ମୋ ଦେହରେ ଏକ ବିଦ୍ୟୁତ୍ର ଶିହରଣ ମୁଁ ଅନୁଭବ କଲି । ଏଇ ଭାଗୀ ଓଗ୍ରାମର ସ୍ତ୍ରୀ । ସତୁରି ଅଣି ବର୍ଷର ବୁଢ଼ା ଭାଗୀ ଓଗ୍ରାମ ଆଉ ତାର ସ୍ତ୍ରୀ ପନ୍ଦର ଷୋହଳ ବର୍ଷର ଅପରୂପ ରୂପବତୀ ମହୁଆ ।

କିଛି ସମୟ ମୁଁ ବିସ୍ମୟ ବିମୂଢ଼ ହୋଇ ମହୁଆର ରୂପଶ୍ରୀକୁ ଚାହିଁରହିଲି । ତାପରେ ନିଜକୁ ସଂଯତ କରି ଭାଗୀ ଓଗ୍ରାମକୁ ଧମକ ଦେଲି । ଆଉ ଦିନେ ଯଦି ଯା ଦେହରେ ହାତ ଦେଇଛୁ, ତେବେ ତୋର ଦିନେ କି ମୋର ଦିନେ । ମଦ ପିଇ ଏଠି ଗୋଟାଏ ତାମସା ଲଗେଇଛି···।"

ଏହାପରେ ଭାଗୀ ଓଗ୍ରାମ ଆଉ ବିଶେଷ ମାରଧର କରେନି ମହୁଆକୁ । ଯେବେ ବି କିଛି ସେପରି ଅପ୍ରୀତିକର ଘଟଣା ଘଟିଯାଏ ମହୁଆ

ସିଧା ଛୁଟିଆସେ ମୋର ପାଖକୁ ଅନ୍ତୁସ୍ଥ ନେବା ପାଇଁ । ମୋଠାରୁ ଅଭୟ ପାଇ ସେ ଫେରିଯାଏ । ହେଲେ ମୋ ମନରେ କ୍ରମଶଃ ମହୁଆ ପ୍ରତି କରୁଣା ବଢ଼ି ବଢ଼ି ଚାଲିଥାଏ ।

ସେଦିନ ସିମିତି କେତେ ରାତି ହେବ କହିପାରୁନି । ତେବେ ବେଶିରେ ଖାଇପିଇ ଖୁବ୍ ଜୋରରେ ଶୋଇପଡ଼ିଥାଏ ମୁଁ । ହଠାତ୍ ଶୁଣିଲି କିଏ ଖୁବ୍ ଜୋରରେ ମୋ କବାଟ ପିଟିବାରେ ଲାଗିଛି । ଭାବିଲି, କିଏ ଆଉ ହୋଇପାରେ ଏତେ ରାତିରେ ? ହଠାତ୍ କବାଟ ଖୋଲି ନ ଦେଇ ଭିତରୁ ପ୍ରଶ୍ନ କଲି, "କିଏ ?"

"ମୁଇଁ ବାବୁ ମହୁଆ···" ନାରୀ କଣ୍ଠର ଭୟାର୍ତ୍ତ କଣ୍ଠସ୍ୱର ।

ଏତେ ରାତିରେ ଖୁବ୍ ବିରକ୍ତ ବି ଲାଗିଲା । ପୁଣି ବୋଧହୁଏ ଭାଗୀ ଓରମ ନିଶା ଝୋଲରେ ମହୁଆକୁ ପିଟାପିଟି କରିଛି ଯୋଉଥିପାଇଁ ବିଚାରୀ ପ୍ରାଣଭୟରେ ଏଠାକୁ ଦୌଡ଼ିଆସିଛି । ମନରେ ଖୁବ୍ ବିରକ୍ତ ଆସିଲେ ବି ମନରାଗ ମନରେ ରଖି କବାଟ ଖୋଲିଲି । ଆଜି ଆଉ ଭୟରେ ଘରଭିତରକୁ ଦୌଡ଼ି ଆସିଲା ନାହିଁ ସେ । କବାଟ ପାଖରେ ଛିଡ଼ାହୋଇ ଧକେଇ ଧକେଇ କାନ୍ଦିବାକୁ ଲାଗିଲା ।

"କ'ଣ ହେଲା···କାନ୍ଦୁଚୁ କାହିଁକି ? ପୁଣି କ'ଣ ଆଜି ଭାଗୀ ତୋତେ ମାରଧର କରିଛି ?" ମୋ କଣ୍ଠରେ ବିରକ୍ତି ।

"ନାଇଁ, କିଛି ନ ଥିଲା । ଲୋକଟା ଆଜି କୁଆଡ଼ୁ ବହୁତ ପିଇ ଫେରିଲା । ମୋତେ କିଛି ନ କହି ସିଧା ଯାଇ ଶୋଇପଡ଼ିଲା । ହେଲେ ଏବେ ତାର କ'ଣ ହୋଇଯାଉଛି ବାବୁ । ଝାଡ଼ା ବାନ୍ତି ଦୁଇମୁହଁ ଛୁଟିଛି । ତାର କ'ଣ ହୋଇଯାଉଛି ବାବୁ । ତୁଇ ଆ, ନ ହେଲେ ସେ ମରିଯିବ ବାବୁ···" ମହୁଆ କାନ୍ଦୁଥିଲା । ସେହି ବୁଢ଼ା ସ୍ୱାମୀପାଇଁ କାନ୍ଦୁଥିଲା ତାର ତେଇଶ ବର୍ଷର ଯୁବତୀ ସ୍ତ୍ରୀ ମହୁଆ ।

"ମୁଁ ଯାଇଁ କ'ଣ କରିବ । ଡାକ୍ତର ଆସିଲେ ସିନା କ'ଣ କରିବ ?" ଭାଗୀ ଓରମ ଘରକୁ ଏତେ ରାତିରେ ଯିବାପାଇଁ ମୋର ଆଦୌ ଇଚ୍ଛା ନ ଥାଏ । ଏ ଭିତରେ ମହୁଆକୁ ମୋତେ କେନ୍ଦ୍ରକରି କେତେକଥା

ଲୋକ ମୁଖରେ ପ୍ରକାଶ ପାଇଥାଏ । ନାଜ ଭଗୀ ଓରାମ ବି କାହେ, "ଶାଳୀ ମାଇକିନିଆ ଆମ ବାବୁଟାର ପ୍ରେମରେ ପଡ଼ିଛି । ସବୁ ଠିକ୍ କରିଦେବ..."

"ଚାଲ ବାବୁ" ମହୁଆ ବିକଳରେ କାନ୍ଦୁଥିଲା । ମୁଁ ଆଉ ବାଟେ କିଛି ଚିନ୍ତା ନ କରି ମହୁଆ ସାଥିରେ ଚାଲିଲି । ସତକୁ ସତ ମହୁଆ ଘରକୁ ଯାଇ ଯାହା ଦେଖିଲି ସେଥିରେ ମୋର ଅନ୍ତରାତ୍ମା ବି କାନ୍ଦିଉଠିଲା । ଭଗୀ ଓରାମ ଆମେ ଯିବା ସମୟକୁ ଏ ସଂସାର ଛାଡ଼ି ଚାଲିଯାଇଛି । ବାଡ଼େଇପିଟି ହୋଇ ରାହାଗୁଡ଼ି କାନ୍ଦିବାକୁ ଲାଗିଲା ମହୁଆ । ତା ପାଟିରେ ପାଖ ଘରର ଲୋକେ ବି ଉଠିଲେ । ଭଗୀ ଓରାମର ମୃତ୍ୟୁ ସମ୍ବାଦକୁ ଅନେକେ ସହଜରେ ଗ୍ରହଣ କରିପାରିଲେ ନାହିଁ । କିଏ କେତେ ପ୍ରକାର ଆଲୋଚନା କଲେ । କିଏ କହିଲା ବୁଢ଼ାଟାର ମାଡ଼ ଦାଉରୁ ରକ୍ଷା ପାଇବା ପାଇଁ ମହୁଆ ତାକୁ ବିଷ ଦେଇ ମାରିଛି । ଆଉ କେତେକ କହିଲେ ବାବୁଟା ମହୁଆ ପ୍ରେମରେ ପାଗଳ ହୋଇ ବୁଢ଼ାଟାକୁ ମରେଇ ଦେଲା । ଲୋକ ମୁହଁରୁ ମୁହଁକୁ କେତେ କଥା ପ୍ରଚାର ହୋଇଗଲା । ତେବେ ସମସ୍ତଙ୍କ ସହଯୋଗରେ ଭଗୀ ଓରାମର ଶବ ସତ୍କାର ମୁଁ କରେଇ ଦେଲି ।

ଶବ ସତ୍କାର ପରେ ପରେ ହିଁ ଆରମ୍ଭ ହେଲା ପ୍ରକୃତ ଅସୁବିଧା । ଯିଏ ଯାହା କହିଲେ ବି ମହୁଆ ପ୍ରତି ମୋର ଗୋଟାଏ ନୈତିକ କର୍ତ୍ତବ୍ୟ ଅଛି ବୋଲି ମୁଁ ଭାବିଲି । କାହାର ଆଲୋଚନା ବା ସମାଲୋଚନାକୁ ଡରିଲେ ବିଚାରୀ ଏ ବୟସରେ କରିବ କ'ଣ ? ଯିବ କୁଆଡ଼େ ? ପୁଣି ଅନ୍ୟ ସମୟରେ ଭାବେ ସେ ମଲେ ଗଲେ ମୋର କ'ଣ ଅଛି । ମୁଁ କାହିଁକି ତା ପାଇଁ କାହାର ସମାଲୋଚନାର ପାତ୍ର ହେବି । କିନ୍ତୁ ମହୁଆକୁ ଦେଖିଲେ ମୋ ମନରେ ଅନ୍ୟ ଭାବନା ଆସେ । ତାକୁ ତା quarterରୁ ବାହାର କରିଦେବାକୁ ମୁଁ ସାହସ କରି କହିପାରେନି ବରଂ ସେ ସେଇଠି ରହି ମୋ ବୋଲହାକ ଓରାମ ଭଳି କରିବାକୁ ମୁଁ ତାକୁ କହିଦେଲି । ସନ୍ଧ୍ୟା ପୂର୍ବରୁ ମୋ ଘରର ସବୁକାମ କରି ସେ ତା quarterକୁ ଫେରିଯାଏ ।

ସେଦିନ କିନ୍ତୁ ମହୁଆକୁ ସନ୍ଧ୍ୟା ପରେ ମୋ quarterରୁ ନ ଯିବାର ଦେଖି ଆଶ୍ଚର୍ଯ୍ୟ ହେଲି । "କ'ଣ ହେଲା; ତୁ ଏଯାଏ ଯାଇନୁ ଯେ ?"

"ନାଇଁ ବାବୁ···ମୁଇଁ ଆଉ ସେଠାକେ ନାଇଯିବ ।"

"କାହିଁକି ? ମୋ ନାଁରେ କ'ଣ ବଦ୍‌ନାମର ନାଗରା ପିଟିବୁ ଏଠି ରହି ।" ଖୁବ୍ ବିରକ୍ତିର ସହ ମୁଁ କହିଲି ।

"ନାଇଁ ବାବୁ" ! ମହୁଆ ବିକଳ ହୋଇ କାନ୍ଦିଲା । ରାତିହେଲେ ଛତରା ଟୋକାଏ ମୋ କବାଟ ପିଟୁଛନ୍ତି । କାଲି ରାତିକେ ବାବୁ ରତନା ଦୋକାନୀ ମଦପିଇ ଯୋରକବରଦସ୍ତ ମୋ ଘରେ ପଶିଗଲା । ମୁଇଁ ତାକେ ପନକାରେ ହାନଦେଲି ବୋଲି ସେ ଗୁଲିଗଲା···।"

ମୁଁ ପୁଣି ବିଚିତ୍ର ଅବସ୍ଥାର ସମ୍ମୁଖୀନ ହେଲି । ତେବେ ବର୍ତ୍ତମାନ କରାଯିବ କ'ଣ ? ମୋ ଘରେ ଏ ବୟସର ଏତେ ସୁନ୍ଦରୀ ଯୁବତୀଟିଏ ରହିଲେ ଲୋକେ ମୋତେ କ'ଣ କହିବେ ।

"ତୁ ତେବେ ରହିବୁ କେଉଁଠି ?" ମୋ କଣ୍ଠସ୍ୱର ସ୍ୱତଃ କୋମଳ ହୋଇପଡ଼ିଲା ।

"ତୋର ଯୋଉ କାଠଘରଟା ଥିଲା ବାବୁ—ମୁଇଁ ତାକୁ ସାଫ୍ କରଦେଇଚେ । ମୁଇଁ ସେଇଠି ଶୋଇବ ବାବୁ"···ତା କଣ୍ଠରେ ଗଭୀର ଅନୁନୟ ।

ମୁଁ ଆଉ ତାକୁ ବାରଣ କରିପାରିଲି ନାହିଁ । ମହୁଆ ସେଦିନ ସେଇ ଘରେ ଶୋଇଲା । ଗୋଟିଏ ଘରେ ଅପରୂପ ରୂପବତୀ ଯୁବତୀ ମହୁଆ । ଅନ୍ୟ ଘରେ ମୁଁ ୨୪-୨୫ ବର୍ଷର ଯୁବକ । ସାରାରାତି କିପରି ଅସ୍ୱାଭାବିକ ଉତ୍ତେଜନାରେ କଟିଗଲା । ମୁଁ ଜାଣେନା, ମହୁଆ କ'ଣ ଭାବୁଥିଲା କି ନିଶ୍ଚିନ୍ତରେ ଶୋଇ ଯାଇଥିଲା । କିନ୍ତୁ ସାରାରାତି ମୁଁ ଅସମ୍ଭବ ଉତ୍ତେଜନାରେ ଛଟପଟ ହେଉଥିଲି ।

"ନାଇଁରେ ବାବୁ, ମୁଇଁବ ସାରାରାତି ଛଟପଟ ହେଉଥିଲି । ତୋ ଆଖିରେ କି କିମିଆ ଥିଲା ବାବୁ ମୁଇଁ ତୋର ଆଖିକୁ ହିଁ ସାରାରାତି ଭାବୁଥିଲି । ହେଲେ ବୁଢ଼ାଟା ଯୋଉ ଦେହକୁ ନେଇ ଖେଳ ଖେଳିଛି । ଯୋଉ ଦେହକୁ ଛୁଇଁ ଅଛୁଆଁ କରିଛି ସେ ଦେହ ନେଇ ମୁଇଁ ତୋ ପାଖକୁ କିପରି ଯାଇଥାନ୍ତି ବାବୁ ।" ଅନେକଦିନ ପରେ ହଠାତ୍ ମୋ କଥା ମଝିରେ କହିଉଠିଲା ।

ପରଦିନ ଅତି ସକାଳୁ ଉଠି ମହୁଆ ତାର ପ୍ରତିଦିନର କାମରେ ଲାଗିଗଲା । କିନ୍ତୁ ଲୋକ ମୁହଁରେ କଥାଟା ଅନ୍ୟରୂପ ନେଲା । ମହୁଆକୁ ମୋତେ ନେଇ କରି ଆହୁରି ଜୋରରେ ପ୍ରଚାର ଚାଲିଲା । ପ୍ରଥମ କେତେଦିନ ମୋ ପକ୍ଷରେ ଏ ଅପପ୍ରଚାର ଖୁବ୍ ବ୍ୟଥାଦାୟକ ହେଲା । ସେ ସ୍ଥାନ ଛାଡ଼ି ଚାଲିଯିବା ପାଇଁ ଅନେକ ଚେଷ୍ଟାକଲି ମୁଁ । କିନ୍ତୁ ମହୁଆର କ'ଣ ହେବ ? ସେ ବିଚାରୀ, ମୁଁ ଏଠାରୁ ଚାଲିଗଲେ ଯିବ କୁଆଡ଼େ ? ସବୁ ଦିଗରୁ ଚିନ୍ତାକରି ପରିସ୍ଥିତି ସହିତ ନିଜକୁ ମିଶେଇ ନେବାକୁ ଚେଷ୍ଟାକଲି ମୁଁ । କ୍ରମଶଃ ଲୋକଙ୍କ କଥାକୁ ଆଉ ଭ୍ରୂକ୍ଷେପ କଲିନାହିଁ । କିନ୍ତୁ ପ୍ରତି ରାତିରେ ମହୁଆର ମହୁଆଳିଆ ଚାହାଣୀ ମୋତେ ବିମୋହିତକରେ-ଉତ୍ତେଜିତ କରେ । କିନ୍ତୁ ସାଧାରଣ ଲୌକିକତାର ପ୍ରାଚୀର ମୋତେ ତା ପାଖକୁ ଯିବାକୁ ନିବୃତ୍ତ କରିଦିଏ ।

"ମୋତେ ପାଞ୍ଚଟା ଟଙ୍କା ଦେ ବାବୁ ।" ସେଦିନ ମୋତେ ସକାଳୁ ସକାଳୁ ମହୁଆ ଟଙ୍କା ମାଗିଲା ।

ମୁଁ ଆଶ୍ଚର୍ଯ୍ୟରେ ଅନେଇଲି ମହୁଆର ମୁହଁକୁ । ଏଠି ରହିବାର ମହୁଆର ଗୋଟିଏ ମାସ ବିତିଗଲାଣି । ତେବେ ମହୁଆ କ'ଣ ତାର ମାସିକ ଦରମା ମାଗୁଛି ।

"ଟଙ୍କା କ'ଣ କରିବୁ ?" ମୁଁ ପ୍ରଶ୍ନକଲି ।

"ଗୋଟିଏ ଦୁଧିଆଳୀ ଛେଳି କିଣିବି ବାବୁ । କଥାବାର୍ତ୍ତା କରିଛି । ଦିନକୁଦିନ ତୁ ଶୁଖିଯାଉଛୁ । ଛେଳି ଦୁଧ ପିଇଲେ ତୁ ମୋଟା ହୋଇଯିବୁ ବାବୁ ।" ମହୁଆର କଣ୍ଠରେ ମାତୃତ୍ୱର ଭରା ଆତ୍ମୀୟତା ।

ମହୁଆକୁ ଆଉ କିଛି ନ ପଚାରି ତା ହାତରେ ଟଙ୍କା ଧରେଇ ଦେଇଥିଲି । ଟଙ୍କା ନେଇ ମହୁଆ ଛେଳିଟିଏ କିଣି ପ୍ରତି ସକାଳେ ସଞ୍ଜେ ଛେଳିକ୍ଷୀର ମୋତେ ପିଆଇ ମୋ ସ୍ୱାସ୍ଥ୍ୟର ଆଶୁ ଉନ୍ନତି ସାଧନ କରିବାକୁ ଲାଗିପଡ଼ିଲା । ମୁଁ ମଧ୍ୟ କ୍ରମଶଃ ମହୁଆକୁ ମୋର ଭାଷା ଶିଖାଇଲି । ସାମାନ୍ୟ ଲେଖାପଢ଼ାବି ଶିଖେଇଲି । କ୍ରମଶଃ ମହୁଆ ମୋ ଜୀବନର ଏକ ଅଙ୍ଗ ହୋଇ ପଡ଼ିଲା ।

କଥା କିନ୍ତୁ ଲୁଚି ରହିଲା ନାହିଁ । ଘରେ ହୁଏତ ବାପ ଭାଇ କିପରି ଏ କଥା ଜାଣିଗଲେ । ସେଦିନ ଏକ ଆକସ୍ମିକ ଟେଲିଗ୍ରାମ ପାଇ ମୁଁ ଘରକୁ

ଗୃହଗଲି । ଘରେ କିନ୍ତୁ ମୋ ପାଇଁ ଏକ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି ହୋଇ ରହିଥିଲା । ଘରେ ପହଞ୍ଚି ମୋତେ ବରବେଶ ସାଜି ବେଦୀରେ ବସିବାକୁ ହେଲା । ସୁନପୁନ୍ନୀ ସହିତ ମୋର ବିବାହ । ସୁନପୁନ୍ନୀର ବାପ ସେ ଅଞ୍ଚଳର ଜଣେ ପ୍ରତିଷ୍ଠିତ ଲୋକ । ବାପାଙ୍କ ଭାଷାରେ ତାଙ୍କ ଘରେ ବନ୍ଧୁବାନ୍ଧବୀ ଭାଗ୍ୟରେ ଥିଲେ ସୁଦ୍ଧ । କିନ୍ତୁ ବାସର ରାତିରେ ଯେତେବେଳେ ମୁଁ ସୁନପୁନ୍ନୀକୁ ଦେଖିଲି କାନ୍ଦି ବି ପାରିଲିନାହିଁ । କାଳୀହୋଇ ଝିଅଟା । ଗୋଟାଏ ଆଖି ନଷ୍ଟ ହୋଇଯାଇଛି—ବେହଣ୍ଡା ଦାନ୍ତରୁ କଥାଗୁଡ଼ା ଫସ୍‌ଫସ୍ ହୋଇ ବାହାରି ଆସୁଚି ସତେକି । କପରି ଏକ ବିଶ୍ରି ଭାବନାରେ ମୋ ଦେହଟା ଥରି ଉଠିଲା । କ୍ଷଣକ ଆଗରୁ ବାସର ରାତିପାଇଁ ଯୁବମନରେ ଉଠିଥିବା ସମସ୍ତ ଉତ୍ତେଜନାର ଝଡ଼ ସତେକି ବିରାଟ ପାହାଡ଼ ଦେହରେ ଧକ୍‌କା ଖାଇ ଦୂର୍ଣ୍ଣିରେ ପରିଣତ ହୋଇଗଲା । ମୁଁ ଗ୍ରହିଁ ପାରୁନଥିଲି ବାସର ରାତିର ମୋର ନବ ପରିଣିତା ସ୍ତ୍ରୀକୁ । ଆଖି ଆଗରେ ମୋର ସହସ୍ର ରକ୍ତକନ୍ୟାର ରୂପ ନେଇ ନାଚୁଥିଲା ମହୁଆ ।

କିନ୍ତୁ ମୋ ମନର ସମସ୍ତ ଆଲୋଡ଼ନ ପ୍ରତିଆଲୋଡ଼ନକୁ ପ୍ରତିହତ କରି ବାପାଭାଇଙ୍କ ମନ ରଖିବାକୁ ଜାଣୀ ସୁନପୁନ୍ନୀ ସହ ମୋତେ ଚଳିବାକୁ ପଡ଼ିଲା । କିନ୍ତୁ ମହୁଆ, ମହୁଆ କଥା ଗୋଟିଏ ମୁହୂର୍ତ୍ତ ପାଇଁବି ମୋ ମନରୁ ଲିଭିପାରିଲା ନାହିଁ । ତେଣୁ କିପରି ଶୀଘ୍ର ମୁଁ ମୋ କର୍ମକ୍ଷେତ୍ରକୁ ଫେରିଯିବି ସେଥିପାଇଁ ବ୍ୟଗ୍ରହୋଇ ପଡ଼ିଲି । ଭାଉଜ କିନ୍ତୁ ମୋ ମନୋଭାବକୁ ଠିକ୍ ବୁଝିନେଲେ । ମୋ ଖାଇବା ପିଇବାର ତତ୍ତ୍ୱ ନେବା ପାଇଁ ସୁନପୁନ୍ନୀକୁ ବି ମୋତେ ଅଗତ୍ୟା ବାଧ୍ୟ ହୋଇ ସଙ୍ଗରେ ଆଣିବାକୁ ପଡ଼ିଲା ।

ସୁନପୁନ୍ନୀ ଘରେ ପଶୁ ପଶୁ ତା ଆଖିରେ ପଡ଼ିଲା ମହୁଆ । ରୂପର ନିଆଁରେ ଯିଏ ଝଟକୁଛି । ଯାହାର ରୂପ-ନିଆଁ ଝାସରେ ପୋଡ଼ିଯିବ ସୁନପୁନ୍ନୀ । ଏଇ ତେବେ ସେ ମାଇକିନିଆ । ଯିଏ କିମିଆକରି ଏତେଦିନ ହେଲା ତା ସ୍ୱାମୀକୁ ମେଣ୍ଢାକରି ରଖିଛି । ଆସୁ ଆସୁ ତେଣୁ ମହୁଆ ଉପରେ ତାର ଅତ୍ୟାଚାର ଆରମ୍ଭ ହେଲା । ସ୍ଥାନୀୟ ସ୍ତ୍ରୀଲୋକମାନେ ବି ସୁନପୁନ୍ନୀର ମନକୁ ନାନାକଥା କହି ଆହୁରି ବିଷାକ୍ତ କରିଦେଲେ । ଏଇ ମାପୁଆଣୀ ପାଲରେ ପଡ଼ି ତାର ସ୍ୱାମୀ ଏପରି ହୋଇଛି ।

"ମୁଁ ତ ଅସିଲିଣି । ଏ ମାଇକିନିଆଟା କାହିଁକି ରହିବ ?" ସେଦିନ ରାତିରେ ଫିସ୍ ଫିସ୍ କରି ମୋ କାନରେ କହିଲି ସୁନୟନୀ ।

"ନିଆଁଶୀ ଲୋକଟା । ପେଟ ଖାଇ ଅଛିତ, ଥାଉ ।' ମୁଁ ପ୍ରତିବାଦ କରି କହିଲି । 'ଏତେ କାମ କରୁଚ ।'

ସୁନୟନା ଆଉ ପ୍ରତିବାଦ କରିନି । କିନ୍ତୁ ମହୁଆକୁ ପ୍ରତି କଥାରେ ଏପରି ଭାବରେ ହଇରାଣ କରିବାକୁ ଆରମ୍ଭକଲା ଯେ ବିଚରାର ଜୀବନ ଦୁର୍ବିସହ ହୋଇପଡ଼ିଲା ।

"କଲେ ଚଣ୍ଡୀ ! ଛେଳି ଦୁଧ ସବୁ କ'ଣ ହେଉଛି ?" ମହୁଆକୁ ସେଦିନ ଜେରା କଲା ସୁନୟନୀ । ମହୁଆ ମୋ ପାଖକୁ ଛେଳିଦୁଧ ଧରି ଆସୁଥାଏ ହୁଏତ ।

"ବାବୁ ପାଖକୁ ନେଉଛି, ବାବୁ ପିଇବ ।" ମହୁଆର ସଂକ୍ଷିପ୍ତ ଉତ୍ତର ମୁଁ ଆର ଘରୁ ଶୁଣୁଥାଏ ।

"ବଜାତ୍ ମାଇକିନିଆ, ବାବୁ ସୋହାଗ ଦେଖାଉଛି । ଯାହା ଆସୁଛି ଦୁହେଁ ମିଳି ସବୁ ଖାଇବ । ମଜ୍ଜା କରିବ ଆଉ ମୁଁ ଏଠି ବସି ନାଚ ଦେଖିବି । ଆଣ୍ ସେ ଦୁଧ ।" ସୁନୟନାର କଣ୍ଠସ୍ୱର ଖୁବ୍ କଡ଼ା ଶୁଭୁଥାଏ ।

"ନା—ବାବୁ ଦିନକୁଦିନ ଶୁଖିଯାଉଛି । ଏ ମୋ ଛେଳିର ଦୁଧ, ମୋ ବାବୁ ପିଇବ ।" ମହୁଆର ପ୍ରତିବାଦଭରା କ୍ଷୀଣ କଣ୍ଠସ୍ୱର ଶୁଭିଲା ।

"ତୋ ବାବୁ ! ବଜାତ୍ ମାଇକିନିଆ । ମୋର ଗେରସ୍ତ ହେଲାନି ତୋର ବାବୁ ହୋଇଗଲା । ବାହାର ମୋ ଘରୁ ।" ତା ପରେ ଗ୍ଲାସଟାଏ ପଡ଼ି ଭାଙ୍ଗିଯିବାର ଝଣ ଝଣ ସ୍ୱର ମୁଁ ଶୁଣିଲି । ହୁଏତ ମହୁଆ ହାତରୁ ଗ୍ଲାସ ଟାଣି ନେଇଯିବା ସମୟରେ ଗ୍ଲାସଟା ପଡ଼ି ଭାଙ୍ଗିଯାଇଛି । ମହୁଆ ଉପରେ ତା ପରେ ବିଧା ଗୋଇଠାର ପ୍ରହାର ଏକ ପ୍ରକାର ଚାଲିଲା । ଆର ଘରୁ ମୁଁ ମହୁଆ ଉପରେ ମାଡ଼ ହେଉଥିବାର ଶୁଣୁଥାଏ । ମହୁଆର ଚାପାକଣ୍ଠର କରୁଣ କାନ୍ଦରେ ଛାତି ଭିତରଟା ମୋର ଟଣ୍ ଟଣ୍ କରି ଉଠୁଥାଏ । କିନ୍ତୁ ମୁଁ କରିବ କ'ଣ ? ଏଇ ମହୁଆ ଉପରେ ମାଡ଼ ଦେଇଥିଲି ବୋଲି ତାର ସ୍ୱାମୀକୁ ମୁଁ ଧକ୍କା ମାରିଛି । ହେଲେ ଆଜ ମୋ ସ୍ତ୍ରୀ ତାକୁ ମାଡ଼

ଦେଉଛୁ ଅଥଚ ମୁଁ ମାଇଚଆ୍ ପାଖକୁ ଯାଇ ପ୍ରତିବାଦ କରିବାକୁ ବି ସାହସ କରି ପାରୁନ । କାରଣ କିଛି କହିଲେ ସୁନପୁନୀ ପାଟିକର ଦୁନିଆ ଫଟେଇବ । ସାଧାରଣ ଶିଷ୍ଟାଗୁର ଭୁଲ କ'ଣ ନାହିଁ କଣ କହିଯିବ । ମୁଁ ସ୍ନାଣୁ ଭଳି ଆଗଘରେ ବସି ଏସବୁ ମାରିବାରେ ଓଠରେ ଓଠ ଚିପି ସହି ଯାଉଥାଏ । ମହୁଆ କେତେବେଳେ ସେଇଠୁ ଫେରି ମୋ ପାଖରେ ଛିଡ଼ା ହୋଇଛି ମୁଁ ଜାଣେ ନା । ତା'ର କୋହରେ ମୋର ଧ୍ୟାନ ଭାଙ୍ଗିଲା । ମୁଁ ଚାହିଁଲି ମହୁଆକୁ ଆଉ ମହୁଆ ମୋତେ ।

"ବାବୁ" ! ଦେ। ଭଉଣୀ ମୋତେ ମାରୁଛି ବାବୁ ! କିଛି କହୁନ ତାକୁ ।" ମହୁଆ କଣ୍ଠରେ କାରୁଣ୍ୟ ଝରୁଥିଲା ।

ମୁଁ ଅତି ଅସହାୟ ଭାବରେ ମହୁଆର ମୁହଁକୁ ଚାହିଁଲି । ତାପରେ କିଛି ନ କହି ସେଠାରୁ ଘରଭିତରକୁ ଚାଲିଗଲି । ତା ନ ହୋଇଥିଲେ ମୁଁ କାନ୍ଦି ପକେଇଥାନ୍ତି । ସତରେ ଆଉ ମୋର ଏ ଦୁର୍ବଳତା ମୁଁ ମହୁଆକୁ ଦେଖେଇବାକୁ ଚାହୁଁ ନଥିଲି ।

ସେଦିନ ବୁଲି ବୁଲି ବହୁତ ରାତିରେ ଫେରିଲି । ଦୁଆର ବନ୍ଦରେ କାନ୍ଥକୁ ଆଉଜି ମହୁଆକୁ ଛିଡ଼ାହେବାର ଦେଖିଲି । ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲି । ପାଖରେ ତାର ଗୋଟିଏ ଛୋଟ ପୁଟୁଳି । କାଳୀଜହ୍ନରେ ମୁଁ ସ୍ପଷ୍ଟ ଦେଖିଲି ମୋତେ ଦେଖି ମହୁଆ ଆଖିରୁ ଲୁହ ପୋଛି ପକେଇଲା ।

"ମହୁଆ ତୁ ଏତେରାତିରେ, ଏଠି ?" ମୁଁ ରହି ରହି ପ୍ରଶ୍ନକଲି ।

"ମୁଁ ଚାଲିଯାଉଛି ବାବୁ । ତୋ ଭଉଣୀ ମୋତେ ମାରୁଛି । ମୋତେ ଗାଳିଦେଉଛି ।" ମହୁଆ କାନ୍ଦି ପକେଇଲା ।

କିଛି ନ କହି ମୁଁ ମହୁଆ ପାଖକୁ ଲାଗିଗଲି । ତାକୁ ତଳୁ ଉଠାଇ ଅତି ଗଭୀର ଭାବରେ କୋଳରେ ଚାପି ଧରିଲି । ମୋ ଆଖିରୁ ଧାର ଧାର ଲୁହ ଗଡ଼ିଆସି ମହୁଆ ଗଣ୍ଡ ଧୋଇ ଦେଲା ।

"ଛି, ବାବୁ ! ତୁ କାନ୍ଦୁଚୁ । ମୁଁ ଘର ପୋଇଲିଟା ।"

ମୁଁ ଆଉ କିଛି କହିଲି ନାହିଁ । କ୍ରମଶଃ ମୋ ହାତର ବନ୍ଧନ ସିଥିଳ ହୋଇ ପଡ଼ିଲା । ମହୁଆ କୁଆଡ଼େ ଯିବ, କମିତି ଯିବ କିଛି ନ

ପଚାର ମୁଁ ସିଧା ଘର ଭିତରକୁ ଚାଲିଗଲି । କାରଣ ମହୁଆ ପାଖରେ ମୋ ଦୁର୍ବଳତା ଧରି ନପଡ଼ୁ, ଏହା ହିଁ ମୋର ଉଦ୍ଦେଶ୍ୟ । କିନ୍ତୁ ଆଃ—ଯଦି ମହୁଆକୁ ମୁଁ ସବୁଦିନ ପାଇଁ ଧରି ରଖି ପାରିଥାନ୍ତି··· ।

ତା'ପରର ଘଟଣା ଅତି ସଂକ୍ଷିପ୍ତ । ମହୁଆ ସେଦିନ ରାତିରେ ଯାଇ ଏଇ ଗଛରେ ଦଉଡ଼ି ଲଗେଇ ଦେଇଥିଲା ।

"ହଁ ବାବୁ ! ସେଦିନଠୁଁ ଏ ଗଛରେ ମୋ ଆତ୍ମା ତୋର ବାଟ ଚାହିଁ ବସିରହିଛି, ଆଉ ଆଜି ତୁ ଆସିଲୁ ।" ଅଶରୀରୀ କଣ୍ଠରେ ଭରା ଅଭିମାନ ।

'ନା, ମହୁଆ ନା—ମୁଁ ସବୁ ଭୁଲିଯାଇଥିଲି—ଆ, ମୋ ପାଖକୁ ଆ ।' ବିକଳ କଣ୍ଠରେ କହିଲି ମୁଁ ।

"ତୁ ମୋତେ ଏବେ ବି ଭଲ ପାଉଚୁ ବାବୁ !"

"ହଁ, ମହୁଆ—ମୋ ଆଗକୁ ଆ···"

"ତେବେ କବାଟ ଖୋଲି ମୋ ସଙ୍ଗରେ ଆ—ବ୍ରାହ୍ମଣୀ କୂଳରେ ବସି ଗପ କରିବା ।" ମହୁଆ କଣ୍ଠରେ ଅନୁନୟ ।

ମୁଁ କିଛି ବିଚାର ନ କରି ମହୁଆ ପଛରେ କବାଟ ଖୋଲି ଚାଲିଲି । ଆଜି ବି ରାତିରେ କଳାଜହ୍ନର ମ୍ଳାନ ଆଲୋକ । ଆଗରେ ମୋର ଅଶରୀରୀ ମହୁଆର ପ୍ରେତାତ୍ମା, ଆଉ ପଛରେ ଛୁଟିଛି ମୁଁ । ବ୍ରାହ୍ମଣୀ କୂଳ ଡେଇଁ ମୁଁ ଯେତେବେଳେ ବ୍ରାହ୍ମଣୀର ଧାରରେ ପହଞ୍ଚିଲି, ଅଶରୀରୀ ବ୍ରାହ୍ମଣୀ ଭିତରେ କେଉଁଠି ଲୁଚିଗଲା ସତେକି । ଗଭୀର ଗର୍ତ୍ତ, ଅଥଳକୂଳ ପାଣି, ଲହରି ଖେଳୁଛି ଖାଲି । ମୁଁ ବିକଳରେ ଡାକିଲି "ମ-ହୁ-ଆ···!"

"ଆସ ବାବୁ"···ନଈ ଭିତରୁ ଅଶରୀରୀର କଣ୍ଠସ୍ୱର ଶୁଭୁଥିଲା ସତେକି ।

"ମହୁଆ···" ମୁଁ ନଈ ଧାରରେ ଛିଡ଼ାହୋଇ ବିସ୍ଫାରିତ ନେତ୍ରରେ ଏଣେ ତେଣେ ଚାହୁଁଥିଲି । ହୁଏତ ଆଉ ଗୋଟିଏ ମୁହୂର୍ତ୍ତରେ ମୁଁ ନଈକୁ ଡେଇଁ ପଡ଼ିଥାନ୍ତି । ହଠାତ୍ ଯେପରି ମୋ ପଛରେ କିଏ ଆସି ଛିଡ଼ାହୋଇଗଲା । ମୁଁ ଗୋଲକ ଧନ୍ଦା ଭିତରେ ପଛକୁ ଚାହିଁ ଦେଖେ ତ ବଙ୍ଗଳା ଚୌକିଦାର ଅଣନିଶ୍ୱାସୀ ହୋଇ ଧାଇଁଛି ।

"ବାବୁ" !

ମୁଁ ଅବାକାବା ହୋଇ ଗୃହିଁ ରହିଲି ତାକୁ । ଅନାଦି ଦୌଡ଼ିଆସି ମୋତେ ସମ୍ପୂର୍ଣ୍ଣ ଭାବେ କୁଣ୍ଡେଇ ଟାଣି ନେଇଗଲା । "ବାବୁ ତଳକୁ ଗୃହିଁଲ !"

ମୁଁ ତଳକୁ ଗୃହିଁଲି । ସତରେ ତଳେ ବ୍ରାହ୍ମଣୀର ମାଳଜଳ ବିକଟ ଗର୍ଜନ କରି ଘାଉଁସି ଖାଉଛି । ଯଦି ଠିକ୍ ମୁହୂର୍ତ୍ତରେ ମୋ କାନରେ କଣ୍ଠସ୍ୱର ଶୁଣି ନ ଥାନ୍ତି ତେବେ ଏତେବେଳକୁ ହୁଏତ ମୋର ଜଳୀୟ ସମାଧି ହୋଇସାରନ୍ତାଣି ।

"ମୁଁ ସବୁ ଜାଣେ ବାବୁ, ସେ ଡାଆଣୀ ଆଜି ତୁମର କିଛି ଗୋଟାଏ କରିବ ?"

ମୁଁ ଆଉ କିଛି ନ କହି ଅନାଦି ସାଥିରେ ଫେରି ଆସିଲି ବଙ୍ଗଳାକୁ । ପରଦିନ ଆଉ କୁଆଡ଼େ ଯାଇ ନାହିଁ ମୁଁ । ସନ୍ଧ୍ୟାରେ ପୁଣି ଭୁବନେଶ୍ୱର ଅଭିମୁଖେ ଫେରିଆସିଲି । ଆଜି କିନ୍ତୁ ରୂପବତୀ ରାଉରକେଲା ମୋତେ ଯେପରି ରଙ୍ଗହୀନ ଜଣାପଡୁଥିଲା । ଉଜ୍ଜ୍ୱଳ ଆଲୋକ ମାଳା କିପରି ବିବର୍ଣ୍ଣ ଦେଖାଯାଉଥିଲା । ଆଉ ପବନରେ ସତେକି ମହୁଆର ପ୍ରେତାତ୍ମା ମୋ ପଛେ ପଛେ ଛୁଟିଥିଲା । ତାର ଥରିଲା ଥରିଲା, କଣ୍ଠସ୍ୱର, ବିକଳ ଅନୁନୟ ବିକଳ ବିକଳ ଅବୟବ । ସବୁ ମିଶି ମୋ ମନରେ କିପରି ଏକ ଦ୍ୱିପିଳ ଅବସ୍ଥା ସୃଷ୍ଟି କରୁଥିଲା । ମୁଁ କାନ୍ଦୁ ନ ଥିଲି କି ହସୁ ନ ଥିଲି । କେବଳ ଛାତିରେ ଅସମ୍ଭବ ବ୍ୟଥା ଅନୁଭବ କରୁଥିଲି ।

ଦୂରରୁ ଦୂରକୁ ରାଉରକେଲା ଛାମସୀ ବସି ଜ୍ୟୋତିହୀନ ହୋଇ ପଡୁଥିଲା ।



# କାହାଣୀ : ଏକ ଅତୃପ୍ତ-ଆତ୍ମାର

ଆକାଶଟା ସମ୍ପୂର୍ଣ୍ଣ ପରିଷ୍କାର ନ ଥିଲେ ବି ମେଘ ହେବାର ଆଦୌ ସମ୍ଭାବନା ନ ଥିଲା । କିନ୍ତୁ ରାତି ଅନେକ ହୋଇଯାଇଥିବାରୁ ସୁବାସ ଏକୁଟିଆ କିନ୍ତୁ ଭୁବନେଶ୍ୱର ଆସିବାକୁ କିପରି ଏକ ଦ୍ୱିଧାରେ ପଡ଼ିଯାଇଥିଲା । କେତେ ଦିଗରୁ ଚିନ୍ତା କରୁଥିଲା ସେ । ଯିବା ନିହାତି ଦରକାର । ତେବେ ଯିବା ବାଟରେ ଯଦି କୌଣସି ଅସୁବିଧା ହୁଏ ? ଆଜିକାଲି ଭୁବନେଶ୍ୱର କଟକ ରାସ୍ତା ଆଦୌ ନିରାପଦ ନୁହେଁ । ଚୋର ଉପଦ୍ରବ ତ ଅଛି, ତା ସାଙ୍ଗକୁ ରାସ୍ତାରେ କେତେବେଳେ କିମିତି ଅଶରୀରୀ ଆତ୍ମାମାନଙ୍କର ଆବିର୍ଭାବ ଘଟୁଛି ବୋଲି କେତେକ ବଡ଼ ବଡ଼ ଲୋକମାନେ ବି କହିଲେଣି । ସୁବାସ କିନ୍ତୁ ଏସବୁକୁ ବିଶ୍ୱାସ କରେନା । ଏସବୁ ବିକୃତ ମସ୍ତିଷ୍କର ଉଦ୍ଭଟ କଳ୍ପନା ବିନାହ ବୋଲି କହି ଉଡ଼େଇ ଦିଏ । ତେବେ ଏକୁଟିଆ ରାତିରେ କୌଣସି ଶ୍ମଶାନ ପାଖଦେଇ ଗଲାବେଳେ ବିଚରା ଖୁବ୍ ଜୋରରେ ଦେବାଦେବୀଙ୍କୁ ଡାକିବାର କଥାଟାକୁ ନିହାତି ଉଡ଼େଇ ଦେଇ ହେବ ନାହିଁ ।

ସେଦିନ ରାତିରେ କଟକରୁ ଭୁବନେଶ୍ୱର ଆସିବା ସମ୍ପର୍କରେ ଅନେକ କିଛି ଚିନ୍ତା କରୁଥିଲା । ସୁବାସର ସମସ୍ତ ଚିନ୍ତାଠାରୁ ବଡ ଚିନ୍ତା ଥିଲା ଗାଡ଼ି କଥା । ଗାଡ଼ିଟା କୋଉ କାଳର ହେଲାଣି । ଟାୟାରର ଅବସ୍ଥା ତ କହିବା କଥା ନୁହେଁ । କେଉଁ ମୁହୂର୍ତ୍ତରେ ରାସ୍ତାରେ ଆତାସବାଜି ସୃଷ୍ଟି କରିବ କିଏ କହିବ । ଚେନ୍‌ଟା ବି ଖୁବ୍ ସ୍ଲାକ୍ ହୋଇଯାଇଛି । ଚଲାଇଲାବେଳେ ଜଣାଯାଏ ମଟରସାଇକେଲ ନୁହେଁ, ମହାନଦୀ ବ୍ରିଜ୍ ଉପରେ କରମଣ୍ଡଳ ଏକ୍ସପ୍ରେସ୍ ଚିତ୍କାରି ଛୁଟିଛି ! ସୁବାସ ମନରେ ଆଶଙ୍କା

ଗାଡ଼ିଟା ଯଦି ବାଟରେ ବିଗାଡ଼ିଏ ? ନା, ଜଗନ୍ନାଥଙ୍କୁ ମନପୂରି ଡାକିଟାଏ ଚାଳି ଗାଡ଼ି ଚଳାଉଥିଲା ସେ । ମାତ୍ର ଗାଡ଼ି ଫୁଲନଖରା ପାଖରେ ପହଞ୍ଚିଛି କି ନାହିଁ ଆକାଶରେ କାହିଁ କୁଆଡ଼ୁ ଖୁବ୍ ଘଞ୍ଚ କଳାହାଣ୍ଡିଆ ମେଘ ମାଡ଼ିଆସିଲା । ଆଉ ଫୁଲନଖରା ଛକରେ ସେ ହୋଇଛି କି ନାହିଁ ବରକୋଳି ଥୋପି ଆରମ୍ଭ ହୋଇଗଲା । ଜଗନ୍ନାଥଙ୍କ କୃପାରୁ ଗାଡ଼ି ନୁହେଁ, ଏ ଅଦିନିଆ ମେଘଟା ଅମ୍ବୁଧାରେ ଫଟିଗଲା । ବିଚରା ସୁବାସ ଲକ୍ଷେଶ୍ୱର ଘାଟପାଖ ଚୁଙ୍ଗିଘରେ କିଛି ସମୟ ମୁଣ୍ଡ ଗୁଞ୍ଜି ରହିଗଲା, ମାତ୍ର ଏ ବର୍ଷା ଯେ ଛାଡ଼ିବାର ନୁହେଁ । ବଡ଼ ଅସ୍ୱସ୍ତି ବୋଧ କଲା ସେ । ଅବଶ୍ୟ ବଡ଼ବର୍ଷା କମି ଗଲା ମାତ୍ର ଝିପି ଝିପି ଲାଗିରହିଲା । କେତେ ସମୟ ବା ସେ ଏପରି ଏ ସ୍ଥାନରେ ଅଟକି ରହିବ । ଅଗତ୍ୟା ସେ ଯାହା ବା ଫଳାଫଳ ହେଉ ତାକୁ ଅପେକ୍ଷା ନ କରି ଆସି ମଟରସାଇକେଲ ଷ୍ଟାର୍ଟ କଲା । ମାତ୍ର ସେଇଟା ବା ସହଜରେ ଷ୍ଟାର୍ଟ ହେଉଛି କେତେବେଳେ । ବର୍ଷାରେ ଭିଜି ଭିଜି ଗାଡ଼ିଟା ପୁରାପୁରି କାଲୁଆ ମାରିଯାଇଛି । ଜଗନ୍ନାଥଙ୍କୁ ଖୁବ୍ ବିକଳିଆ ଡାକମାରି କିଛି ସମୟ ଅକ୍ଳାନ୍ତ ପରିଶ୍ରମ କଲା ପରେ ଗାଡ଼ିଟା ଷ୍ଟାର୍ଟ ହୋଇଗଲା । ଯାହାହେଉ ଖୁବ୍ ଛୋଟା ସଫଳତା ପାଇବା ପରି ସୁବାସ ଗାଡ଼ିରେ ବସିଲା ଆଉ ତାର ୧୯୭ ମଡେଲ ରାଜଦୂତ ଫଣ୍ଟିକ ମେଘ ଘଡ଼ଘଡ଼ିକୁ ନିନ୍ଦାକରି ଚାଲିଲା ଘଡ଼୍ ଘଡ଼୍ ଶବ୍ଦକରି ।

ପାହାଲ ପାରି ହୋଇଯାଇଛି ସୁବାସ । ସାମନାକୁ ଚାହିଁ ଚମକିପଡ଼ିଲା ସେ । ମେଘ ଅନ୍ଧାରରାତି, ମୁହଁକୁ ମୁହଁ ଦେଖାଯାଉ ନାହିଁ । ଏତେ ରାତିରେ ଜଣେ ଯୁବତୀ ଉପରେ ତା ଗାଡ଼ିର ହେଡ଼ ଲାଇଟ୍ ପଡ଼ିଛି । ସୁବାସର ସମସ୍ତ ଶକ୍ତି ସତେକି ଅବଶ ହୋଇଗଲା । ଚିନ୍ତାଶକ୍ତି ତାର ଛିନ୍ନଭିନ୍ନ ହୋଇଗଲା । ଏତେ ରାତିରେ ଏ ନିର୍ଜନ ସ୍ଥାନରେ ଜଣେ ଯୁବତୀ ହାତ ହଲେଇ ମଟରସାଇକେଲ ଅଟକାଇବା ପାଇଁ ଚେଷ୍ଟା କରୁଛି । ତେବେ ଏ ସେହି ଅଶରୀରୀ ନୁହେଁତ ? ଏକ ଅଜଣା ଆତଙ୍କରେ ଶିହରି ଉଠିଲା ସୁବାସ । ଗାଡ଼ି ବ୍ରେକ୍ କରିବାକୁ ଚେଷ୍ଟା କରି ବି ସେ ବିଫଳ ହେଲା । ତା ଗୋଡ଼ହାତ ସବୁ ଅବଶ, ଦେହ ଥରୁଛି ଅସମ୍ଭବ ଭାବରେ । ନାଲିଲୁଗା ପିନ୍ଧିଛି ଯୁବତୀଟି । ଗୋରା ଦେହକୁ ଲୁଗାଖଣ୍ଡିକ ଖୁବ୍ ସାଜିଛି । ସୁବାସ କିପରି ଦ୍ୱିଧା ଭିତରେ ପଡ଼ିଛି ବିଚରା । ଏକ ଦିଗରେ ରୂପ ପ୍ରତି.

ଅନିଶ୍ଚିତ ମୋହ ଅନ୍ୟ ଦିଗରେ ଅନେକାଂଶ ହୋଇଥିବାର ଶ୍ରୀତପ୍ରଦ ଆଟେକ୍କା । ବିଚରା ଦନ୍ତକଷ୍ଟ କରି ଯୁବତୀଟି ପାଖରେ ଗାଡ଼ି ପହଞ୍ଚିବା ପୂର୍ବରୁ ବୁଲାପଡ଼ି ଚନ୍ଦ୍ରଙ୍କୁ ଫେରାଇ ଯିବାର ସିଦ୍ଧାନ୍ତ କରିଥିଲେ ବି ଗାଡ଼ିଯାଇଁ ସେହି ଯୁବତୀଟି ପାଖରେ ହିଁ ରହିଲା । ଭୟବିହ୍ୱଳ ଆଖିନେଇ ଚାହିଁଲା ସୁବାସ । ମଟରସାଇକେଲର ହେଡ୍‌ଲାଇଟ୍ ପୂରାପୂରି ପଡ଼ୁଛି ଯୁବତୀଟି ଉପରେ । ଅସମ୍ଭବ ସୁନ୍ଦରୀ ଯୁବତୀଟି । ଚେହେରାରେ କାହାରି ଏକ ସ୍ନିଗ୍ଧତା ଅଛି ସତେକି । ଦେହରେ ନାଲିଶାଢ଼ୀ, ସିନ୍ଥିରେ ସିନ୍ଦୁର, ଯେ ଦେଖିବ ଯୁବତୀଟିର ରୂପ ଶୋଭାରେ ମୁଗ୍ଧ ହେବ ନିଶ୍ଚୟ । ତେବେ ମୁହଁଟି ତାର ଶୁଖିଯାଇଛି । ଆଖିରୁ ଲୁହ ଝରିଆସୁଛି । ନା, ନିଶ୍ଚୟ କିଛି ବିପଦ ପଡ଼ିଛି ଝିଅଟି ଉପରେ । କ୍ଷଣକ ପୂର୍ବରୁ ଯେଉଁ ଭୟ ଥିଲା ସେ ସବୁକୁ ଜବରଦସ୍ତ ମନରୁ ଦୂରେଇ ଦେଲା ସୁବାସ । ଯାହା ବା ପରିଣତି ହେଉ, ଝିଅଟିକୁ ସାହାଯ୍ୟ କରିବାକୁ ହେବ । ମୁହଁଟି ତାର ବେଶି ଚିହ୍ନା ଚିହ୍ନା ଲାଗୁଛି । ତେବେ କେଉଁଠି କେବେ ଦେଖିଛି, ତାର ମନେପଡ଼ୁନି ।

"ସାର୍, ମୋତେ କ୍ୟାପିଟାଲ ପର୍ଯ୍ୟନ୍ତ ନେଇଗଲେନି । ମୁଁ ଖୁବ୍ ବିପଦରେ ପଡ଼ିଛି···ମୋତେ ସେ ଏଠି ଛାଡ଼ିଦେଇ ପଳେଇଛନ୍ତି ।" ସତେକି ବ୍ୟଥା ବେଦନାରେ ଖଣ୍ଡ ଖଣ୍ଡ ହୋଇ ତାର କଥାଗୁଡ଼ିକ ଭାଙ୍ଗିପଡ଼ୁଛି ।

ତମ ଘର କେଉଁଠି, ଏତେ ରାତିରେ ତୁମକୁ କିଏ ଏଠି ଛାଡ଼ି ଚାଲିଗଲା ? ସୁବାସର ଦ୍ୱିଧାଗ୍ରସ୍ତ ପ୍ରଶ୍ନ ।

"ମୋତେ ଚିହ୍ନିପାରୁ ନାହାନ୍ତି ସାର୍ । ମୁଁ ସୁବାସିନୀ, ସୁବାସିନୀ ମହାନ୍ତି । ଆପଣଙ୍କ ଅନର୍ସ ଛାତ୍ରୀ ଥିଲି ବି. ଜେ. ବି. ରେ ।" ବେଦନାର ସ୍ପଷ୍ଟ ସ୍ୱର ସୁବାସିନୀ କଣ୍ଠରେ ।

"ଆରେ ହଁ, ହଁ ! ତୁମକୁ ଦେଖିଲାବେଳୁ ମୁଁ ସନ୍ଦେହରେ ପଡ଼ିଛି । ପ୍ରଥମେତ ଉଠିଲା ଅଣଚିହ୍ନା ଭାବ । ହେଲେ ତମେ ଏତେ ରାତିରେ ଏଠି ?" ସୁବାସର ଆତ୍ମୀୟତା ପୂର୍ଣ୍ଣ ପ୍ରଶ୍ନ ।

"ମୋତେ କ୍ୟାପିଟାଲରେ ଆମ ଘରେ ପହଞ୍ଚାଇ ଦିଅନ୍ତୁ । ତାପରେ ମୁଁ ଆପଣଙ୍କୁ ସବୁ କହିବି । ଆପଣ ଜାଣିଲେ ସିନା ମୋ କଥା ଆପଣଙ୍କ ଗଳ୍ପରେ ଆସିବ । ଆଉ ସମସ୍ତେ ଏକ ବେଦନାର୍ତ୍ତ ଜୀବନର

କାହାଣୀ ଶୁଣିବେ । ଆପଣ ମୋତେ କ୍ୟାପିଟେଲ୍‌ରେ ପହଞ୍ଚାଇ ଦିଅନ୍ତୁ ସାର୍ । ଅନୁନୟ ସୁବାସିନୀ କଣ୍ଠରେ ।

"ତେବେ ଆସ । କିନ୍ତୁ ମୋ ଗାଡ଼ି ଅବସ୍ଥାତ ଦେଖୁଛ । କେଉଁ ମୁହୂର୍ତ୍ତରେ ଦଗାଦେବ କିଏ କହିବ । ତାପରେ ତେନ୍ ଆଉ ସାଇକେଲ୍‌ର ଅବସ୍ଥା ଯାହା ବସିବାମାତ୍ରେ ଏପରି ଝଣ୍ଡି ଶବ୍ଦ ହେବ ଯେ ଯୋଜନ ଦୂରକୁ ଶୁଭିବ ।" ନିଜର ସମସ୍ତ ଅସୁବିଧା ସୁବାସିନୀକୁ ଜଣାଇ ଦେବାକୁ ଚାହୁଁଥିଲା ସୁବାସ ।

"ଆପଣଙ୍କର ସେହି କଥା ଆଉ ଗଳାନି ସାର୍," ସୁବାସିନୀ ମୁହଁରେ ଏକ ବେଦନାର୍ତ୍ତ ହସ । ସତେକି ବହୁ କଷ୍ଟରେ ଦୁଃଖମୟ ବେଦନା ଭେଳାକୁ ଆଡ଼େଇ ଚନ୍ଦ୍ର ପଦାକୁ ବାହାରି ଆସୁଛି ।

ସୁବାସ ଆଉ ବିଶେଷ କିଛି ନକହି ଗାଡ଼ି ଷ୍ଟାର୍ଟ କଲା । ଏଥର ଆଉ ଗାଡ଼ି ଷ୍ଟାର୍ଟ ହେବାକୁ ବିଶେଷ କଷ୍ଟହେଲା ନାହିଁ । ସୁବାସିନୀକୁ ପଛରେ ବସାଇ ଖୁବ୍ ଧୀରେ ଧୀରେ ଗାଡ଼ି ଚଳାଇଲା ସୁବାସ । ଭୟ କାଳେ ଗାଡ଼ିଖଣ୍ଡିକ ବାଟରେ ଦଗାଦେବ । ନିଜେ ହଇରାଣ ହୋଇଥିଲେ ଚଳିଥାନ୍ତା, ମାତ୍ର ପଛରେ ତା'ର ଗୁଣୀ ବସିଛି । ଯଦି ଗାଡ଼ିଟା ବାଟରେ ଅଟକି ଯାଏନା, ତା ହେଲେ ତା ପୁରୁଷକାରକୁ ବାଧିବ । କିନ୍ତୁ ଝିଅଟା ବସିଛି ବା କିମିତି ? ଏତେ ଯତ୍ନରେ ବସିଛି ଯେ ତା ଦେହରେ ଝିଅଟାର ସ୍ପର୍ଶ ବି ଟିକେ ଲାଗୁନି । ସୁବାସ ଯୁବକ, ପଛରେ ତାର ବସିଛି ଅନିନ୍ଦ୍ୟ ସୁନ୍ଦରୀ ଏକ ଯୁବତୀ । ଗାଡ଼ି ଯେତେ ହାଲି ଚଳି ଗଲେବି ତା ଦେହରେ ଝିଅଟାର ସ୍ପର୍ଶ ଟିକେ ଏ ପାଗରେ ବାଜୁନି ! ବଡ଼ ନିରାଶ ହେଲା ବିଚରା । ଝିଅଟା ବିବାହ ପରେ ହୁଏତ ଖୁବ୍ ଗମ୍ଭୀର ହୋଇଯାଇଛି ।

ମାତ୍ର ରସୁଲଗଡ଼ ଡେଇଁ ଗାଡ଼ି ବାଣୀବିହାର ରାସ୍ତାରେ କିଛିବାଟ ଆଗେଇବା ପରେ ପରେ ପୁଣି ଭୟଙ୍କର ବର୍ଷା ଆସିଗଲା । ସୁବାସ ପ୍ରାଣାନ୍ତକ ଚେଷ୍ଟାକରି ରେଲୱେ ବ୍ରିଜ୍ ପାରି କରେଇନେଲା ଗାଡ଼ିଟା । ମାତ୍ର ନା, ଆଉ ଆଗକୁ ଗାଡ଼ି ଚଳେଇନେବା ତା'ପକ୍ଷରେ ସମ୍ଭବ ନୁହେଁ । ବର୍ଷା ଟୋପି ତା ଆଖିରେ ବୁଲେଟ୍ ଭଳି ବାଜୁଛି । ଅଗତ୍ୟା ସୁବାସ ଅନନ୍ୟୋପାୟ ହୋଇ ଅତି ଧୀରେ ଧୀରେ ଗାଡ଼ିଟା ନେବାକୁ ଚେଷ୍ଟାକଲା ।

ପ୍ରେସ ପାଖରୁ ଆଉ ଆଗକୁ ଯିବା ଉଚିତ ମନେ କଲାନାହିଁ ସେ । ଗାଡ଼ି ସେଇଠି ବ୍ରେକ୍ କରି ସୁବାସିନୀଙ୍କୁ ଓହ୍ଲାଇବାକୁ କହିଲା । ନିଜେ ଓହ୍ଲେଇ ଗାଡ଼ି ଷ୍ଟାଣ୍ଡକଲା । ପ୍ରେସ ବାରଣ୍ଡାରେ ଲାଇଟ୍ ଜଳୁଛି । ଏ ପାଗରେ ହୁଏତ କେହି କଗୁଆଲୀ ନଥିବେ । ବାରଣ୍ଡାରେ କିଛି ସମୟ ଅନ୍ତତଃ ଆଶ୍ରା ନିଆଯାଉ ।

"ଆସ ସୁବାସିନୀ । କିଛି ସମୟ ଅନ୍ତତଃ ଏଇଠି ଅପେକ୍ଷା କର, ମେଘ ଛାଡ଼ିଲେ ଯିବା । ଏ ମେଘରେ ମଟର ସାଇକେଲ ଚଳାଇବା ସମ୍ଭବପର ନୁହେଁ ।" ନିଜେ କିଛିବାଟ ଆଗକୁ ଦୌଡ଼ି ପଛକୁ ପୁଣି ଫେରି ଆସିଲା ସେ । ସୁବାସିନୀର ହାତ ଧରି ନେଇଯିବ ବୋଲି । ମାତ୍ର ସୁବାସିନୀ କିଛି ବାଟ ପଛକୁ ଘୁଞ୍ଚିଗଲା ।

"ଆପଣ ଚାଲନ୍ତୁ ସାର୍ ! ମୁଁ ପଛରେ ଯାଉଛି" ।

ମନେ ମନେ ଖୁବ୍ କ୍ଷୁଣ୍ଣ ହେଲା ସୁବାସ । ଆଉ କିଛି ନହେଲା ନାହିଁ ଏ ପାଗରେ ହାତଟା ଟିକେ ଧରିଲେ କ'ଣ ପୁରାଣ ଅଶୁଦ୍ଧ ହୋଇ ଯାଇଥାନ୍ତା । କିଛି ନକହି ସୁବାସ ଏକା ଉଆଁକେ ଯାଇଁ ପ୍ରେସ ବାରଣ୍ଡାରେ ଉଠିଲା ।

ଆରେ ବାପ୍‌ରେ ! ଝିଅଟା ବ କେତେ ସ୍ପିଡ୍‌ରେ ଆସିଲାମ । ସୁବାସ ଦେଖିଲା ଯେ ସେ ପହଞ୍ଚିବା ଆଗରୁ ସୁବାସିନୀ ପହଞ୍ଚିଗଲା ।

"ଆରେ ବାଃ ! ମୁଁ କ'ଣ ତୁମକୁ ସାହାଯ୍ୟ କରିବାକୁ ହାତ ବଢ଼ାଉଥିଲି । ତୁମେତ ମୋତେ ସାହାଯ୍ୟ କରିବା କଥା । କେତେ ଶୀଘ୍ର ଆସିଲମ ।" ସୁବାସ ମୁହଁରେ ବିସ୍ମୟର ଚିହ୍ନ ।

"ମେଘରୁ ବଞ୍ଚିବାକୁ ଟିକେ ଶୀଘ୍ର ଚାଲି ଆସିଲି ।" ଲାଜରେ ସୁବାସିନୀର ମୁହଁ ଆରକ୍ତ ହୋଇଗଲା । ଆଉ ପ୍ରେସ ବାରଣ୍ଡାର ମର୍କୁରୀ ଲାଇଟରେ ସୌନ୍ଦର୍ଯ୍ୟମୟୀ ସୁବାସିନୀ ଆହୁରି ସୁନ୍ଦର ଦିଶିଲା ସୁବାସକୁ ।

ଯାହା ଜଣାଯାଉଛି ମେଘ ବର୍ତ୍ତମାନ ଛାଡ଼ିବା ସମ୍ଭବ ନୁହେଁ । ତେଣୁ ତୁମ କଥା ଆପାତତଃ ଶୁଣାଯାଉ । କହିଲ ତୁମେ କିପରି ଏତେ ଦିନରେ ସେଠାରେ ଛାଡ଼ା ହୋଇଥିଲ । କିଏ ତୁମକୁ ସେଠାରେ ଛାଡ଼ି ଦେଇ ପଳେଇଲା । ସୁବାସ ସମୟ କଟାଇବାର ଯୋଜନା କରୁଥିଲା ।

"ମୋର ସବୁକଥା ଶୁଣି ଗପ ଲେଖିବେ ସାର୍ ।" ସୁବାସିନୀର ମୁହଁରେ ଆଗ୍ରହର ଚିହ୍ନ ।

"ତୁମେ ଆଗ ସବୁ କଥା କୁହନା । ଦେଖିବା ଗପ ଲେଖାଯାଇ ପାରିବ କି ନାହିଁ ।" ସୁବାସର ଦେହ ଥରୁଥିଲା ଶୀତରେ । ମାତ୍ର ସୁବାସିନୀ ଦେହରେ କୌଣସି ପ୍ରକାର ପ୍ରତିକ୍ରିୟା ନଥିଲା । ଅବାକ୍ ହୋଇଥିଲା ସୁବାସ, ସତରେ କ'ଣ ହୋଇଛି ସୁବାସିନୀର ।

"ଆଗ କଥା ଛାଡ଼ନ୍ତୁ ସାର୍ ! ମୋ ସମ୍ପର୍କରେ ଗପ ଲେଖିବେ । ଏକ ଅଭାଗିନୀର ଅଭିଶପ୍ତ ଜୀବନ କାହାଣୀକୁ ଲୋକଙ୍କ ଆଗରେ ପରିବେଷଣ କରିବେ ।" ଭରା ଆବେଗ ସୁବାସିନୀ କଣ୍ଠରେ ।

"ହଁ, ତେବେ କୁହ ?" ପକେଟରୁ ସିଗାରେଟ୍ କାଢ଼ି ଲଗେଇବାକୁ ଚେଷ୍ଟାକଲା ସୁବାସ । ନା, ଏ ମେଘରେ ସିଗାରେଟ୍ ପୂରାପୂରି ଓଦା ହୋଇଯାଇଛି । ଦିଆସିଲିଟାକୁ ଜଳେଇବାକୁ ବୃଥା ଚେଷ୍ଟା କରି ରାଗରେ ସିଗାରେଟ୍ ଆଉ ଦିଆସିଲିକୁ ତଳକୁ ଫିଙ୍ଗିଦେଲା ସେ । 'ତମେ ତୁମ କଥା ଆରମ୍ଭ କର ସୁବାସିନୀ । ତୁମ କଥାର ଉତ୍ତାପରେ ଅନ୍ତତଃ କିଛି ସମୟ ଏ ଶୀତରୁ ରକ୍ଷା ମିଳିଯିବ ।' ବାରଣ୍ଡାରେ ବସି ପଡ଼ିଲା ସୁବାସ । ଆରେ ତମେ ବି ବସି ପଡ଼ନା । କେତେ ସମୟ ଛିଡ଼ାହୋଇ ରହିବ । ସୁବାସିନୀ ବି ସୁବାସରେ ନିର୍ଦ୍ଦେଶରେ ତଳେ ବସିପଡ଼ିଲା ।

"ବର୍ତ୍ତମାନ ତା'ହେଲେ ତୁମ କଥା ଶୁଣାଯାଉ ।" ସୁବାସ ନିର୍ଦ୍ଦେଶ ଦେଲା ସୁବାସିନୀକୁ ।

"ମୋର ଏ ଜୀବନ କାହାଣୀ ଏକ ଅଭିଶପ୍ତାର ଅଶ୍ରୁଳ ଉପକଥା ସାର୍ । ଏକ ଅଭାଗିନୀର ଲୁହଭିଜା ଦୁଃଖଦ କାହାଣୀ । ଆପଣ ଧୈର୍ଯ୍ୟର ସହିତ ସବୁ ଶୁଣିବେ ତ ?" ଏକ ବ୍ୟଥାପୂର୍ଣ୍ଣ ଅନୁନୟ ସୁବାସିନୀ କଣ୍ଠରେ ।

"ହଁ, କୁହ ।" ସୁବାସର ଆଶ୍ୱାସନା ବାଣୀ ।

"ମୁଁ ଯେତେବେଳକୁ ମାତ୍ର ଛଅ ବର୍ଷର ହୋଇଥାଏ, ସେତେବେଳେ ମୋ ବୋଉ ମରିଗଲା । ଘର ସମ୍ଭାଳିବାକୁ ବାପା ପୁଣି ଥରେ ବିବାହ କଲେ । ପ୍ରଥମେ ପ୍ରଥମେ ନୂଆ ମା ମୋତେ ଖୁବ୍ ଆଦର କଲେ । ଏତେ ଆଦର ଯେ

ମୁଁ ମୋ ବୋଉକୁ ଭୁଲିଗଲି । ମାତ୍ର କିଛିଦିନ ପରେ ମା କୋଳକୁ ଆସିଲା ମୋର ଶ୍ରେଷ୍ଠ ଭଉଣୀ ନୀଳବଦ୍ଧିତା । ତା ତଳକୁ ରଘୁନାଥ । କ୍ରମଶଃ ମା'ର ବ୍ୟବହାର ବଦଳିଗଲା । ଏସବୁ ପିଲାଙ୍କର ଦାୟିତ୍ୱ ପ୍ରାୟତଃ ମୋ ଉପରେ ନ୍ୟସ୍ତ ହେଲା । ଅବଶ୍ୟ ବାପା ଥିବା ସମୟରେ ନୂଆମା ମୋତେ ଖୁବ୍ ଆଦର କରନ୍ତି । ମାତ୍ର ବାପା ଅଫିସ ଯିବା ପରେ ପରେ ମୋ ଉପରେ ଆରମ୍ଭ ହୁଏ ଅତ୍ୟାଗ୍ୟର । ସେହି ଦୁଃଖ ଭିତରେ, ସେହି ନର୍ଯ୍ୟାତନା ଭିତରେ ମୋର କୈଶୋର କଟିଲା ଏବଂ ମୁଁ ହାଇସ୍କୁଲ ଛାଡ଼ି କଲେଜରେ ପଶିଲି । ବି.ଏ. ପଢ଼ିବା ସମୟରେ ଆପଣଙ୍କ କ୍ଲାସରେ ମୁଁ ଛାତ୍ରୀ ଥିଲି । ଆଉ ଜଣେ ଥିଲା ବନଲତା । ଆପଣ ତାକୁ ଜାଣନ୍ତି ତ ସାର୍ ! ମୋର ଅତି ଅନ୍ତରଙ୍ଗ ।

"ହାଁ—, ସେତ ବର୍ତ୍ତମାନ ଅଧ୍ୟାପିକା ଅଛି ।" ସୁବାସ ବନଲତା କଥାକୁ ଆଡେ଼ଇ ଯିବାକୁ ଚାହୁଁଥିଲା ।

"ହଁ,—ଆପଣଙ୍କ ସାଙ୍ଗରେ ଉପରେପଡ଼ି କଥା କୁହେ । କିଛି ପ୍ରସଙ୍ଗ ନ ଥାଇ ହୋ ହୋ ହୋଇ ହସେ । ଆପଣ ତା ଉପରେ ଯେତେ ବିରକ୍ତ ହେଲେ ବି ସେ ଆପଣଙ୍କୁ ଚିଠି ଲେଖେ ।"

"ହଁ,—ସେଇଟା ବାଜେ ଝିଅଟା, ତୁମ କଥା କୁହ ।" ସୁବାସ ବନଲତା ପ୍ରସଙ୍ଗକୁ ଆଡେ଼ଇ ଯିବାକୁ ଚାହୁଁଥିଲା ।

"କିନ୍ତୁ ବନକୁ ଛାଡ଼ି ଯେ ମୋ କାହାଣୀ ପୂରା ହୋଇପାରିବ ନାହିଁ । ବନ ମୋ ଜୀବନ କାହାଣୀରେ ସର୍ବଶ୍ରେଷ୍ଠ ନାୟିକା···"

"ଓ, ତେବେ କୁହ ।" ସୁବାସ ସତେ କି ଅନିଚ୍ଛା ସତ୍ତ୍ୱେ ରାଜି ହେଲା ।

"ବର୍ଷ ଅଧରେ ଆମ କଲେଜକୁ ବିନୟ ପଟ୍ଟନାୟକ ବଦଳି ହୋଇ ଆସିଲେ ସାର୍ । ଆପଣ ତ ଜାଣନ୍ତି ବନଲତା ସହିତ ଅଳ୍ପଦିନ ଭିତରେ ତାଙ୍କର କପରି ସମ୍ପର୍କ ଗଢ଼ିଉଠିଲା । ବନଲତା ଆପଣଙ୍କ ଉପରୁ ନଜର ଉଠେଇ ଚାହିଁଲା ବିନୟ ବାବୁଙ୍କୁ । ବଡ଼ଘର ଝିଅ, ଗାଡ଼ିରେ ଆସେ । ତା ଉପରେ ଅନେକଙ୍କର ଆଖି, ଆପଣ ଯିନା ବୋକା ସାର୍ ! ତା ନ ହେଲେ ତା ଚିଠିର ଉତ୍ତର ଦେଇ ନ ଥାନ୍ତେ ?" ସ୍ମିତ ହସିଲା

ସୁବାସିନୀ । ଆଃ, ହସରେ ବି ତାର କେତେ କେତେ ଦୁଃଖ ଖସିପଡ଼ୁଛି ସତେକି !

"ତମେ ତମ କାହାଣୀ କହିଯାଅ ସୁବାସିନୀ । ତା କଥା ଶୁଣି ଲାଭ ନାହିଁ ।" ସୁବାସର ଦୃଢ଼ସ୍ୱର ।

"ହଁ ସାର, ବନଲତା ଏବଂ ବନସ୍ପବାବୁ ପ୍ରାୟ ସ୍ଥିର କରିନେଲେ ବିବାହ କରିବେ ବୋଲି । କିନ୍ତୁ ବନଲତାର ବାବା ଏଥିରେ ବାଧା ଦେଲେ । ବନସ୍ପବାବୁଙ୍କର ବଂଶମର୍ଯ୍ୟାଦା ନାହିଁ ବୋଲି କହି ବନସ୍ପ ବାବୁଙ୍କର ମାଙ୍କୁ ଅପମାନ ଦେଇ ଘରୁ ବାହାର କରିଦେଲେ । ବନଲତା ନିଜେ ଆସି ମୋତେ ଅନୁରୋଧ କଲା ବନସ୍ପ ବାବୁଙ୍କୁ ବିବାହ କରିବାକୁ । ବନସ୍ପବାବୁଙ୍କ ମା ଏବଂ ଭଉଣୀ ଆସି ମୋତେ ଖୁବ୍ ଆଦର କଲେ ଏବଂ ମୁଁ ତାଙ୍କୁ ବିବାହ କରିବି ବୋଲି ରାଜି ହୋଇଗଲି ।

"ତା ମାନେ ବନସ୍ପଙ୍କୁ ବିବାହ କରିତ··· ?"

"ହଁ ସାର !" ଏକ ଅବହେଳିତ କୋହରେ ଫାଟିପଡ଼ିଲା ସୁବାସିନୀ ।
ମୁଁ ତାଙ୍କୁ ବିବାହ କରିବାର ମାତ୍ର ଦୁଇମାସ ଯାଇଛି କି ନାହିଁ ଆରମ୍ଭ ହେଲା ତାଙ୍କର ମୋ ପ୍ରତି ଅତ୍ୟାଚାର । ଏବେ ଶିକ୍ଷିତ ହୋଇ ବି ସମୟେ ସମୟେ ମୋତେ ମାରଧର କରନ୍ତି । ମଦପିଇ ଘରେ ବୀଭତ୍ସ ଦୃଶ୍ୟ ସୃଷ୍ଟି କରନ୍ତି । ସେହି ଦୁଃଖରେ ମା ତାଙ୍କର ଖୁବ୍ ଅଳ୍ପ ଦିନରେ ଆଖି ବୁଜିଲେ । ଆଜି ତାଙ୍କ ଭଉଣୀ, ମୋ ଝିଅନେଇ ତାଙ୍କ ଭାଇଙ୍କ ସହିତ ଖୁବ୍ ଚଳି କଟନ୍ତି । ହେଲେ ଦିନକୁ ଦିନ ତାଙ୍କର ଅଧଃପତନ ଖୁବ୍ ଖରାପ ଗନ୍ତାରେ ବଢ଼ିଚାଲିଲା । ମୁଁ ମୋର ସମସ୍ତ ଶକ୍ତି ଦେଇ ତାଙ୍କୁ ରକ୍ଷା କରିବାକୁ ଚେଷ୍ଟା କଲି, ମାତ୍ର ତାଙ୍କୁ ସେଥିରୁ ରକ୍ଷା କରିପାରିଲି ନାହିଁ ।

"ତାମାନେ ଆଜି ବନସ୍ପ ତୁମକୁ ସେ ଅପକର୍ମରେ ପକେଇ ଦେଇ ଚଳିପାରୁଛି । ଚାଲ, ଆଜି ମୁଁ ତାର ମଜା ନିକାଲି ଦେଉଛି···" ସୁବାସର ପୁରୁଷକାର ସତେକି ଚେଇଁଉଠିଛି ।

"ନା ସାର୍ ! ସେ ଆପଣଙ୍କ ଉପରେ ଖୁବ୍ ରାଗିଛନ୍ତି ।"

"ମୋ ଉପରେ ! ମାନେ-କାହିଁକି ?" ସୁବାସ କଣ୍ଠରେ ବିସ୍ମୟ ।

"ତାଙ୍କୁ ଲୁଆଡ଼େ ବନଲତା କହୁଛି, ମୁଁ ଆପଣଙ୍କର ପୂର୍ବ ପ୍ରେମିକା" ସୁବାସିନୀ ତଳକୁ ମୁହଁପୋତିଲା ।

"ମାନେ, ବନଲତା ଏକଥା କଲା କାହିଁକି ? ଯାହାର ସତ୍ୟତା ଆଦୌ ନାହିଁ ! ସେପରି କଥା କହି ସେ ଭୁମ ସଂସାରକୁ ନଷ୍ଟ କରୁଛି କାହିଁକି ? I will ask her. କ'ଣ ଭାବୁଛି ସେ ? I will teach them a lesson !" ଟେବୁଲ୍ ଉପରକୁ ଝୁଙ୍କିପଡ଼ି କହିଲେ ସୁବାସର ।

"ନା ସାର ! ମୁଁ ଛାତ୍ରୀଜୀବନରେ ସତରେ ଆପଣଙ୍କୁ ଖୁବ୍ ଭଲ ପାଉଥିଲି । ଆଜି ମୋର ସେକଥା ପ୍ରକାଶ କରିବାରେ କିଛି ସଙ୍କୋଚ ନାହିଁ ସାର୍, ବରଂ ସତ କହୁଛି ବୋଲି ଟିକିଏ ଆଶ୍ୱାସନା ପାଇବ ତ ?"

"ତା ମାନେ···" ସୁବାସ ବିବ୍ରତ ହେଲା ।

"ନା ସାର୍ ! କେବେ ମୁଁ ଆପଣଙ୍କୁ ମୋ ମନଭାବ ଜଣାଇ ଦେଇ ନାହିଁ । ଦୁଇଖଣ୍ଡି ଚିଠିଲେଖି ଚିରିଛି । ଆପଣଙ୍କୁ କିନ୍ତୁ ଦେଇପାରି ନାହିଁ । ମାତ୍ର ବନଲତା ଏକଥା ଜାଣିଥିଲା । ସେ ବନସ୍ତବାବୁଙ୍କୁ ସବୁ କହିଦେଲା । ଆଉ ବନସ୍ତବାବୁ ମୋତେ ପଚାରିବାରୁ ମୁଁ ସତକଥା କହିଲି । ମାତ୍ର ସେ ବିଶ୍ୱାସ କଲେ ନାହିଁ । ମୋତେ ଅସତୀ, ଦୋଷଚରିତ୍ରା ବୋଲି କହି ଗାଳିକଲେ । ଆଉ ସେଦିନଠୁ ମୋର ନିର୍ଯ୍ୟାତନାର ଦିନ ଆରମ୍ଭ ହେଲା··· ।

ସେଦିନ ସେ ବସି କ'ଣ ଲେଖୁଥିଲେ । ମୁଁ ତାଙ୍କପାଇଁ କ୍ଷୀର ନେଇ ଗଲି । କୌଣସି କାରଣ ନ ଥାଇ ସେ ମୋ ଉପରେ ଖୁବ୍ ବିରକ୍ତ ହେଲେ । ବନଲତାର ଖୁବ୍ ପ୍ରଶଂସା କରି ମୋତେ ଖୁବ୍ ଗାଳିଗୁଲଜ କଲେ । କ୍ଷୀର ଢାଳିଦେଲେ; ସେହି ତତଲା କ୍ଷୀର,ମୋ ଦେହଯାକ ପୋଡ଼ି ହୋଇଗଲା । ମୋ ମନକୁ ଖୁବ୍ ବାଧିଲା ସାର । ମୁଁ ସେଦିନ ପ୍ରଥମଥର ପାଇଁ ତାଙ୍କ କଥାର ପ୍ରତିବାଦ କଲି । ମୋର ନିର୍ଦ୍ଦୋଷିତା ପ୍ରମାଣ କରି ବନଲତାର ପ୍ରକୃତ ଚରିତ୍ର ସମ୍ପର୍କରେ ଜଣାଇଲି । ମାତ୍ର ସେ ହଠାତ୍ ରାଗିଉଠି ମୋ ଉପରକୁ ପେପରଓ୍ୱେଟ୍ ପିଙ୍ଗିଲେ । ମୋତେ ଖୁବ୍ କଷ୍ଟ ହେଲା ସାର୍ । ମୁଁ ବିକଳରେ କାନ୍ଦିଉଠିଲି । ଆଉ ସେହି ଅବସ୍ଥାରେ ତାଙ୍କୁ କହିଲି, "ତମର ଯଦି ଏତେ ମନହେଉଛି, ତମେ ତା ହେଲେ ବନଲତାକୁ ବିବାହ କର ମୁଁ

ଆଉଟୌ ବାଧା ଦେବି ନାହିଁ ।" ମୋ ମୁଣ୍ଡରୁ ସେତେବେଳକୁ ରକ୍ତ ଝରୁଥାଏ ସାର୍ । ମାତ୍ର ସେ ସେଥିକି ଭ୍ରୂକ୍ଷେପ ନ କରି ଖୁବ୍ ବଡ଼ପାଟିରେ କହିଲେ, "ତମେ ଥିବାପର୍ଯ୍ୟନ୍ତ ଜଣେ ସରକାରୀ ଚାକରିଆ ବି ଶିଳ୍ପୀକୁ ବିବାହ କରିବ କପରି ?"

"ସତରେ ସାର ! ଦୁଃଖ ଆଉ ବେଦନାରେ ମୋ ଛାତି ଭିତରଟା ଝଣ୍ ଝଣ୍ କରିଉଠିଲା । ଉଚ୍ଛ୍ୱସିତ କୋହକୁ କୌଣସି ପ୍ରକାର ଚାପିରଖି ମୁଁ କହିଲି, ତମେ ମୋତେ divorce କରିଦିଅ । ମୁଁ ଆପତ୍ତି କରିବି ନାହିଁ...

ମୋ କଥାର କୌଣସି ଉତ୍ତର ନ ଦେଇ ସେ ହଠାତ୍ ଘରଛାଡ଼ି ଚାଲିଗଲେ । ଆପଣ କବି ସାର୍, ଲେଖକ; ଆପଣ ଠିକ୍ ବୁଝିପାରିବେ ମୁଁ ସେତେବେଳେ କି ପ୍ରକାର ଦୁଃଖରେ ଛଟପଟ ହେଉଥିବି । ମୁଣ୍ଡରୁ ରକ୍ତଧାର ଆଉ ଆଖିରୁ ତତଲା ଲୁହର ଅବିରଳ ସ୍ରୋତ ଝରୁଥାଏ । ତାଙ୍କ ବଉଣୀ ଏସବୁ ଦେଖି ବିକଳ ହୋଇ କାନ୍ଦିଲା । ମୁଁ ତାଙ୍କ ଭାଇଙ୍କୁ ବି ଶିଳ୍ପୀ ବିବାହ ପାଇଁ କହିଥିବାରୁ ଖୁବ୍ ବିବ୍ରତ ହେଲେ । ହେଲେ, ସେ କିନ୍ତୁ ଓକିଲ ପରାମର୍ଶ କରି ମୋତେ ଅସତୀ, ଦୋଷଚାରିଣୀ ପ୍ରମାଣିତ କଲେ କୋର୍ଟରେ । ମୁଁ କୌଣସି ପ୍ରତିବାଦ କରିନି । ବିନା ଦୋଷରେ ଏତେ ଲୋକଙ୍କ ଆଗରେ ମୁଁ ଅସତୀ ହୋଇଗଲି ସାର ।" ଏକ ଉଚ୍ଛ୍ୱସିତ କୋହରେ ଫାଟିପଡ଼ିଲା ସୁବାସିନୀ ।

"ତା'ହେଲେ ବିନପ୍ଟ୍ ଏତେ ତଳକୁ ଖସିଯାଇଛି ?' ଘୃଣା ସୁବାସର କଣ୍ଠରେ ।

"ମୁଁ ତ ପୋଡ଼ାକପାଳୀ ସାର, ମୁଁ କାହିଁକି କାହାର ଦୋଷ ଦେବି । ସବୁ ଦୋଷ ମୋର, ହେଲେ ଏ ଯୋଉ ଅସତୀର କଳଙ୍କ ମୁଁ ତାକୁ ଭୁଲିପାରୁନି । ମୋର ଅନ୍ତରାତ୍ମା ବ୍ୟଥାରେ ଫାଟିଯାଉଛି । ଖୁବ୍ ଯନ୍ତ୍ରଣା ମୁଁ ପାଉଛି ସାର୍..."

"ମୁଁ ବିନପ୍ଟ୍ ସହିତ କଥାବାର୍ତ୍ତା କରିବି ।" ସୁବାସ କ୍ରମଶଃ ଦୁର୍ବଳ ହୋଇଉଠୁଥିଲା । ତା ଆଖିରେ ବି ଲୁହ ଆସିଯାଇଛି ।

"ସେ ବର୍ତ୍ତମାନ ସୁଖରେ ଅଛନ୍ତି । ବିନଲତାକୁ ସେ ପୁଣି ରେଜେଷ୍ଟ୍ରି ମ୍ୟାରେଜ୍ କରିଛନ୍ତି । ମୁଁ ତାଙ୍କ ସୁଖସଂସାର ଭିତରେ ଅଯଥା

ଚଳିବାକୁ ଚାହେଁନା । ସେ ଯେତେ ଯାହା ଭାବନ୍ତୁ । ମୁଁ ନ ଚାହେଁ ନାହିଁ । ଅନ୍ୟ କାହାକୁ ନେଇ ଯଦି ତାଙ୍କର ସଂସାର ସୁଖମୟ ହୋଇଛି । ମୁଁ ତାକୁ ନଷ୍ଟ କରିବି କାହିଁକି ?" ସୁବାସିନୀ କଣ୍ଠରେ ଦୃଢ଼ତା ।

"ନା, ନା, ସେକଥା ହେବନି । ତମେ ଆସ, ମେଘ ତ ପ୍ରାୟ ଛାଡ଼ିଗଲାଣି । କୋଉଠି ରହୁଛ ବନଫୁ ?"

"କିନ୍ତୁ ସାର୍...

"ନା, ନା, ସେ.କିନ୍ତୁ ଫିନ୍ତୁ କିଛି ଶୁଣିବିନି । ତମେ ଆସିବଟି ଆସ ।" ସୁବାସ ପୁଣି ସୁବାସିନୀର ହାତ ଧରିବାକୁ ହାତ ବଢ଼ାଉଥିଲା । ମାତ୍ର ବାଧା ଦେଲା ସୁବାସିନୀ ।

"ଚାଲନ୍ତୁ ମୁଁ ଯାଉଛି" ସୁବାସିନୀ ସଚେତକ ଅନିଚ୍ଛା ସତ୍ତ୍ୱେ ଆଗକୁ ଗୋଡ଼-ପକାଉଛି ।

ଗାଡ଼ି ଷ୍ଟାର୍ଟ କଲା ସୁବାସ । ଏଥର କିନ୍ତୁ ଏକା କିକ୍‌ରେ ଗାଡ଼ି ଷ୍ଟାର୍ଟ ହୋଇଗଲା । ସୁବାସିନୀକୁ ପଛରେ ବସିବାକୁ କହି ନିଜେ ଗାଡ଼ିରେ ବସିଲା । ସେ ଆଜି ଗାଡ଼ି ପୁଣି ସମତାଳରେ ଚାଲିଲା ୨ ନମ୍ବର ଯୁନିଟି ଆଡ଼େ । ଗାଡ଼ିର ଚକ ଘୂରୁଛି ଆଜି ସୁବାସ ମୁଣ୍ଡରେ ଚିନ୍ତାର ଚକ ଘୂରିଚାଲିଛି । କପରି ସେ କ'ଣ କହିବ ବନଫୁକୁ ।

"ଏଇ ଗଳିରେ ସାର । ୨୪ ନମ୍ବର quarter..." ସୁବାସିନୀ ସୁବାସର ଅନ୍ୟ ମନସ୍କତା ଦୂରକଲା । ଆଜି ସୁବାସ ୨୪ ନମ୍ବର **quarter** ସାମ୍ନାରେ ହିଁ ଗାଡ଼ି ବ୍ରେକ୍ କଷିଲା । ଗାଡ଼ି ଷ୍ଟାଣ୍ଡ କରି ତରତରରେ ଯାଇଁ କବାଟ ନକ୍ କଲା ସେ ।

"ଆସ ସୁବାସିନୀ, ଆସ । ଡରିବାର କିଛି ନାହିଁ, ମୁଁ ଅଛି ।" ସୁବାସ ଅଭୟ ଦେଇ ସୁବାସିନୀକୁ ଡାକିଲା ।

"ମୁଁ ଯାଉଛି ସାର୍ ! ଆପଣ ତାଙ୍କୁ ଡାକନ୍ତୁ ।" ସୁବାସିନୀ ଗେଟ୍ ପାଖରୁ ଉତ୍ତର ଦେଲା ।

ଥରେ ଦୁଇଥର ଡୁଣିପୁ ଥରକୁ କବାଟ ଫିଟାଇ ସେ ପ୍ରଶ୍ନିଳ ଆଖିରେ ଚାହିଁଲା, ସେ ବନଫୁ ନୁହେଁ ବନଲତା । ଆଖିରେ ତାର ଗଭୀର ତନ୍ଦ୍ରା

ଲାଗିରହିଛି । କେଶବାସ ବିପର୍ଯ୍ୟସ୍ତ । ଦେହରେ ଲୁଗାଖଣ୍ଡେ କେବଳ ଢାଙ୍କିହୋଇଛି ଯେ । ନ ହେଲେ ନଗ୍ନଦେହରେ ସେ ଅଛି ବୋଲି କହିଲେ ଚଳିବ । ସୁବାସ ଭିତରେ ଏକ ବନ୍ତି ଭାବନାରେ ଶିହରି ଉଠେଲା । ଘୃଣାରେ ତା ଦେହ ଶିରଶିର ହୋଇ ଉଠିଲା । ଏଇ ସେ ବନଲତା, ଯିଏ ତା ପାଖକୁ ଗଦା ଗଦା ପ୍ରେମଚିଠି ଲେଖୁଥିଲା । ଆଉ ସେ ଆଜ···

"ସାର୍ ଆପଣ ! ଏତେ ରାତିରେ, ଏଠି ।" କମ୍ପିତ ସ୍ୱରଟିଏ ବନଲତା କଣ୍ଠରେ ।

"ହଁ ମୁଁ ! ଦେଖିବାକୁ ଆସିଲି ଜଣେ ଯୁବତୀକୁ ଏକୁଟିଆ ରାସ୍ତାରେ ପକେଇଦେଇ, ତମେ ଦୁହେଁ କିପରି ଆନନ୍ଦରେ ଅଛ । ଛି, ଛି" ସୁବାସ ମୁହଁରୁ ବି ଘୃଣା ଫୁଟି ପଡୁଥିଲା ।

"କାହା କଥା କହୁଛନ୍ତି । କାହାକୁ ଆମେ ରାସ୍ତାରେ ପକେଇ ଦେଇ ଆସିଛୁ ।"

ଏତେବେଳକୁ ବନଯୂ ଉଠି ଆସିଥାଏ । ସୁବାସକୁ ନମସ୍କାର କରି ସେ ବି ବିସ୍ମୟରେ ଚାହିଁରହିଲା ସୁବାସ ମୁହଁକୁ ।

"ଏତେ ରାତିରେ ସାର୍ ଆପଣ ! ଭିତରକୁ ଓଦା ହୋଇଛନ୍ତି । ଆସନ୍ତୁ, ଘର ଭିତରକୁ ଆସନ୍ତୁ···" ବନଯୂ ବିନୟର ସହ ଡାକିଲା ।

"ମୁଁ ଏକା ନୁହେଁ । ମୋ ସହିତ ଆଉ ଜଣେ ଆସିଛନ୍ତି । ସେ ଗେଟ୍ ପାଖରେ ଅଛନ୍ତି । ଯାଆ ଡାକିଆଣ ।' ସୁବାସ ନିର୍ଦ୍ଦେଶ ଦେଉଥିଲା ସତେକି ।

"କିନ୍ତୁ ସେ କିଏ ?" ବିସ୍ମୟବିମୂଢ଼ ପ୍ରଶ୍ନ ବନଲତାର ।

"ତମର ଏକଦା ଅନ୍ତରଙ୍ଗ ସାଥୀ । ବନଯୂର ସ୍ତ୍ରୀ ସୁବାସିନୀ···"

ସତେ କି ଏକ ଆକସ୍ମିକ ବିସ୍ଫୋରଣ ଘଟିଲା । ଦୁହେଁ ଭୟବିହ୍ୱଳ ଆଖିନେଇ ଚାହିଁଲେ ସୁବାସକୁ । ସୁବାସ ମନେ ମନେ ଆମୋଦିତ ହେଉଥିଲା । ଏକ ଗଢ଼ ସତେ କି ଜୟୁକର ସେ ବନଯୂର ସବୁ ଭାବନାକୁ ମାପି ଯାଉଥିଲା । ଆଉ ବନଯୂ ଭୟରେ । ଆତଙ୍କରେ ଚାହିଁ ରହିଥିଲା ସୁବାସକୁ ।

"ଆରେ ଯାଅ, ତାକୁ ଡାକିଆଣ ।" ଦୃଢ଼ ନିର୍ଦ୍ଦେଶ ସୁବାସ କଣ୍ଠରେ ।

"କିନ୍ତୁ ଆପଣ କ'ଣ କହୁଛନ୍ତି ସାର୍ ? ସୁବାସିନୀ ଆସିବ କୁଆଡ଼ୁ ! ସେ'ତ ଦୁଇବର୍ଷ ହେବ ଏ ଜଗତ ଛାଡ଼ିଲାଣି ।" ବିନୟର ଅବିଶ୍ୱାସଭରା ପ୍ରଶ୍ନ ।

"ମାନେ ?" ଏଥର ଚମକିବାର ପାଳି ସୁବାସର । ସେ ଏକ ପ୍ରକାର ଦୌଡ଼ି ଆସିଲା ଗେଟ୍ ପାଖକୁ । କିନ୍ତୁ କାହିଁ ? ସୁବାସିନୀର ଚିହ୍ନବର୍ଣ୍ଣ କିଛି ଦେଖାଯାଉନି । ସୁବାସ କିପରି ଅଜଣା ଭୟରେ ଥରିବାକୁ ଲାଗିଲା । ପଛେ ପଛେ ତାର ବିନୟ । ସୁବାସକୁ ଧରି ଭିତରକୁ ଆଣିଲା । ଏ ଭିତରେ ବନଲତା ଭଲ ଭାବରେ ଲୁଗାପଟା ପିନ୍ଧି ଆସିଯାଇଛି । ତଥାପି ସୁବାସର ସଂଶୟ ମୋଚନ ହେଉନଥିଲା । ସୁବାସିନୀ ନାହିଁ—ତା'ହେଲେ ଯିଏ ତା ସହିତ ଏତେ ସମୟ କଟେଇଲା, କାନ୍ଦି କାନ୍ଦି ତାଁ ଜୀବନଚରିତ ଶୁଣାଇଲା, ସେ କ'ଣ ତା ହେଲେ ଅତୃପ୍ତ ସୁବାସିନୀର ପ୍ରେତାତ୍ମା ! ବିଶ୍ୱାସ ଅବିଶ୍ୱାସର ସନ୍ଧିସ୍ଥଳରେ ବିଚରା ଦୋହଲୁଥିଲା ।

"ସାର୍ ; ଚା ନିଅନ୍ତୁ ସାର୍ ।" ବନଲତାର ନମ୍ର ଅନୁରୋଧ ।

"କିନ୍ତୁ ଏ ସମ୍ଭବ ହେଲା କିପରି ?" ଚା କପ୍ ଧରୁ ଧରୁ ପ୍ରଶ୍ନକଲା ନିଜକୁ ନିଜେ ସୁବାସ । "ମୋତେ ବିଶ୍ୱାସ କର ବିନୟ । ସେ ମୋ ସହିତ ମଟର ସାଇକେଲ୍‌ରେ ଆସିଲା । ପ୍ରେସ ବାରଣ୍ଡାରେ ଦୁହେଁ ବସିଲୁ ମେଘରୁ ରକ୍ଷା ପାଇବାକୁ । ସେ କାନ୍ଦି କାନ୍ଦି ମୋତେ ତା ଦୁଃଖ କାହାଣୀ କହିଲା । ଆଉ ମୁଁ ତାକୁ ପୁଣି ଧରି ଏଠିକି ଆସିଲି । ସେ ମୋତେ କ୍ୱାର୍ଟର ନମ୍ବର ଏବଂ ରାସ୍ତା କହିଲା ଏଠିକି ଆଣିଲା ।

ବିନୟ ଚାହିଁଲା ବନଲତାକୁ, ଆଉ ବନଲତା ବିନୟକୁ । ଉଭୟଙ୍କର ମୁହଁ ସତେ ଜ ଭୟରେ ଶେତା ହୋଇଯାଇଛି । ସୁବାସ ନିଜେ ବି ବୁଡ଼ୁଥିଲା ବିସ୍ମୟ ରାଜ୍ୟରେ । ମାତ୍ର ହଠାତ୍ ଖୁବ୍ ପାଖରେ କିଏ କଇଁ କଇଁ ହୋଇ କାନ୍ଦୁଥିବା ସ୍ୱରରେ ତିନିହେଁ ସତର୍କ ହୋଇଗଲେ ।

"କିଏ ? ସୁବାସିନୀ ।" ସୁବାସ ଭୟ ବିମୂଢ଼ ପ୍ରଶ୍ନକଲା ।

"ହଁ ସାର ମୁଁ, ଆପଣ ଭୟ କରନ୍ତୁନି ସାର । ମୁଁ କାହାର କିଛି କ୍ଷତି କରିବିନି । ବିନି ଆଉ ଇଏ ସେଦିନ ମୋତେ ଗାଡ଼ିରୁ ପଦାକୁ ବାହାର କରି ତଳକୁ ଫିଙ୍ଗି ଦେଲେ । ଆଉ ମୁଁ ଜ୍ଞାନଶୂନ୍ୟ ହୋଇ ତଳେ

ପଡ଼ିଥିବା ସମୟରେ ମୋ ଉପରେ ଜାଣି ଜାଣି ଗାଡ଼ି ଚଢ଼େଇ ମାରିଦେଲେ । ଏକ କରୁଣ ସଙ୍ଗୀତର ଝଙ୍କାର ଯେପରି ଭାସି ଭାସି ଆସୁଥିଲା ଦୂରରୁ । ତେବେ ବି ମୁଁ ପ୍ରତିଶୋଧ ନେଇନି । ବିନି ମୋର ପିଲାଦିନର ସାଥୀ । ଇଏ ମୋର ସ୍ୱାମୀ, କାହା ଉପରେ ମୁଁ ପ୍ରତିଶୋଧ ନେବି ? ତେବେ ମୁଁ ଅସତୀ ନୁହେଁ । ମୋ ନାଁରେ ଏ ମିଛ ଅଭିଯୋଗ । ମୁଁ ଏ ଅଭିଯୋଗକୁ ସହିପାରୁନି ସାର୍ । ଆପଣ ତାଙ୍କୁ କହନ୍ତୁ, ଆପଣଙ୍କୁ ମୁଁ କେବେ ପ୍ରେମ ନିବେଦନ କରିଛି ? ଚିଠି ଦେଇଛି ? ହେଲେ ମୁଁ ଆପଣଙ୍କୁ ଭଲ ପାଉଥିଲି ଏ ସତକଥା । ମାତ୍ର ବିବାହ ପରେ ମୋ ସ୍ୱାମୀଙ୍କ ବ୍ୟତୀତ ମୁଁ ଅନ୍ୟ ପୁରୁଷର ସ୍ୱପ୍ନ ବି ଦେଖିନି ସାର୍… ।”

“ମୁଁ ବି ! ମୋତେ କ୍ଷମାକର ମୁଁ ବି” କରୁଣ କଣ୍ଠରେ ଅନୁନୟ କରୁଥିଲା ବନଲତା ।

“ବିନୟ, ଯାହା ତ କରିବାର କରିଛ । ମୁଁ ଭଗବାନଙ୍କ ନାମରେ ଶପଥ ନେଇ କହୁଛି ସୁବାସିନୀ କେବେ ମୋତେ ଚିଠି ଦେଇନି । ତା ନିଜ କଥାରେ ସେ ମୋତେ ଚିଠି ଦୁଇଖଣ୍ଡି ଲେଖିଥିଲା, ମାତ୍ର ନିଜେ ଚିରିଦେଇଛି । ହେଲେ ସିଏ ମୋତେ ଚିଠି ଲେଖିଥିଲା… ।”

“ଥାଉ ସାର୍, କାହା ସମ୍ପର୍କରେ କିଛି କହି ତା ସଂସାରକୁ ନଷ୍ଟ କରିବା ଆପଣଙ୍କ ପକ୍ଷରେ ଠିକ୍ ହେବ ନାହିଁ ।” ହଠାତ୍ ସୁବାସ କଥାରେ ବାଧାସୃଷ୍ଟି କଲା ଅଶରୀରୀ ।

“ବିନୟ, ତମେ ଯାହା କରିଚ, ସେ ପାପର ସୀମା ତ ନାହିଁ । ତେବେ ତମେ ଏତକ କୁହ ଯେ ସୁବାସିନୀ ନିଷ୍ପାପ-ପବିତ୍ର ଏତକ ଶୁଣିଲେ ହୁଏ ତ ତାର ଆତ୍ମା ଶାନ୍ତି ପାଇବ ।”

“ହଁ ସାର୍ ! ମୁଁ ତାଙ୍କର ମୁହଁରୁ ଶୁଣିବାକୁ ଚାହେଁ ମୁଁ ଅସତୀ ନୁହେଁ । ମୁଁ କଳଙ୍କିନୀ ନୁହେଁ, ମୋତେ ବିଶ୍ୱାସ କର । ତମେ ହିଁ ମୋର ଇହକାଳ ପରକାଳର ଦେବତା । ତମେ ମୋତେ ଯେତେ ନିର୍ଯ୍ୟାତନା ଦିଅନା କାହିଁକି, ମୁଁ ତୁମକୁ ଆଦୌ ଘୃଣା କରିପାରିବିନି । ବିନି, ମୋତେ ଭୟ କରୁଚ… ।”

"ମୁଁ-ମୁଁ-ମୁଁ" ବନଲତା କଣ୍ଠରେ ଶକ୍ତିଟୁକୁ ନ ଥିଲା ।

"ସୁବାସିନୀ, ମୁଁ ପାପୀ ସୁବାସିବାମୀ । ମୁଁ ଭୟଙ୍କର ପାପୀ, ତମେ ପବନ । ତୁମେ ମୋର ଅଗ୍ନି ପରୀକ୍ଷିତା ସୀତା, ହେଲେ ମୁଁ ପାଷଣ୍ଡ ରାବଣଠାରୁ ବି ହୀନ ।" କହି କରି କାନ୍ଦଉଠିଲା ବନପ୍ସୁ ।

"ଥାଉ, ତମେ କାନ୍ଦିଲେ ମୋ ଆତ୍ମା ଶାନ୍ତି ପାଇବ ନାହିଁ । ତମର ମୁହଁରୁ ମୁଁ ଏତିକି ଶୁଣିବା ପାଇଁ ଘୂରି ବୁଲୁଥିଲି । ଏବେ ମୁଁ ନିଶ୍ଚିନ୍ତ, ମୁଁ ଯାଉଛି ସାର...

"ମାନେ—ଯେଉଁ ଅଶରୀରୀ ଆତ୍ମା କଟକ ଭୁବନେଶ୍ୱର ରାସ୍ତାରେ ଘୂରି ବୁଲୁଛି, ସମୟେ ସମୟେ ଦେଖାଯାଉଛି, ସେ କ'ଣ ତୁମର ସୁବାସିନୀ ।" ସୁବାସ ଯେପରି ସୁବାସିନୀର ଅତି ଆତ୍ମୀୟ । ତାର ଉତ୍ତରଭୟ କିଛି ନାହିଁ ।

"ହଁ ସାର, ମୁଁ ସମୟେ ସମୟେ ସେଇଠି ବୁଲେ, ଯେଉଁଠି ଏ ମୋଟର ଗାଡ଼ି ଚଢ଼େଇ ମାରି ମୁଁ ଆକ୍ସିଡେଣ୍ଟରେ ମଲି ବୋଲି କହୁଥିଲେ । ଆଜିକାଲି ଝିଅମାନଙ୍କୁ ଭୁଲେଇ ଲୋକେ ଯେପରି ବ୍ୟଭିଚାର କରୁଛନ୍ତି, ମୋ ଆଖିରେ ପଡ଼ିଲେ ମୁଁ ସେମାନଙ୍କୁ ରକ୍ଷା କରେ । ମୁଁ କାହାର କିଛି କ୍ଷତି କରେନି ସାର । ମୁଁ ଆସୁଛି, ସକାଳ ହୋଇ ଆସିଲାଣି, ଗଳ୍ପ ନିଶ୍ଚୟ ଲେଖିବେ..."

ଫୁଲଦାନିଟା ହଠାତ୍ ଟେବୁଲ ଉପରୁ ତଳକୁ ଖସିପଡ଼ି ଭାଙ୍ଗିଗଲା । ସମସ୍ତେ ଚମକିଉଠିଲେ, ତା ହେଲେ ସୁବାସିନୀର ପ୍ରେତାତ୍ମା ଏଇ ଟେବୁଲ ପାଖରେ ଛିଡ଼ା ହୋଇଗଲା ।

କିଛି ସମୟ ପାଇଁ କାହାର ମୁହଁରେ କିଛି କଥା ନ ଥିଲା । ସମସ୍ତେ ଯେପରି କେଉଁ ସ୍ୱପ୍ନରାଜ୍ୟରେ ଘୂରୁଥିଲେ । ବନଲତା ଆଖିରେ ଲୁହ ଛଳ ଛଳ କରୁଥିଲା ଆଉ ବନପ୍ସୁ ଭୟ, ଅନୁଶୋଚନା ଆଉ ଦୁଃଖରେ ମ୍ରିୟମାଣ ହୋଇପଡ଼ୁଥିଲା ।

କିନ୍ତୁ ସୁବାସ ଭାବୁଥିଲା ଅନ୍ୟ କଥା, ସୁବାସିନୀର ଅନୁରୋଧ ରଖିବାକୁ ପଡ଼ିବ । ଗପ ଲେଖିବ ସେ, ନିଶ୍ଚୟ ଗଳ୍ପ ଲେଖିବ ସୁବାସିନୀକୁ ନେଇ । ଭାବାକ୍ରାନ୍ତ ମନନେଇ ଉଠି ଛିଡ଼ାହେଲା ସେ, ତାକୁ ପୁଣି

ଯିବାକୁ ହେବ ।" କିନ୍ତୁ ବାଧାଦେଲେ ବନସ୍ପ ଆଉ ବନଲତା, "ସକାଳ ହେଉ ସାର । ଏବେ ଆଉ ଏକୁଟିଆ ଯିବା ନିରାପଦ ନୁହେଁ ।" ହସିଲା ସୁବାସ, "ଆରେ ମୋର ଭୟ କରିବାର କ'ଣ ଅଛି । ସୁବାସିନୀ ମୋତେ ବିପଦରୁ ରକ୍ଷା କରିବ, ତମେ ଦୁହେଁ ଯାଅ । ବିଶ୍ରାମ କର, ମୁଁ ଯାଏ···

"ମୋତେ କ୍ଷମା କରିବେ ସାର୍ । ମୁଁ ଆପଣଙ୍କୁ ଭୁଲ୍ ବୁଝିଥିଲି ।" ବନସ୍ପର ବିକଳ ନିବେଦନ ।

"ଅରେ ମୋର ଭୁଲ୍ ଠିକ୍ ବୁଝିବାର କ'ଣ ଅଛି । ସୁବାସିନୀ ଯେ ତୁମକୁ କ୍ଷମା ଦେଇଛି ସେଇ ଯଥେଷ୍ଟ । ମୁଁ ଆସୁଛି—Bye··· ।"

ସେମାନଙ୍କ କଥାକୁ ଆଉ ଅପେକ୍ଷା ନ ରଖି ସୁବାସ ଆସି ମଟର ସାଇକେଲ ଷ୍ଟାର୍ଟ କଲା, ଆଉ ତାର ଗାଢ଼ ଗୁରୁଗମ୍ଭୀର ବିକଟ ଶବ୍ଦକରି ଚାଲିଲା ରାଜଧାନୀର ସୁପ୍ତ ଲୋକଙ୍କୁ ଆବାହନୀର ଘଡ଼୍ ଘଡ଼୍ ଘଡ଼୍ ଘଡ଼୍ କର୍କଶସ୍ୱର ଶୁଣାଇ ଶୁଣାଇ । ପାହାନ୍ତିଆ କଅଁଳ ନିଦ ଭାଙ୍ଗିବାରୁ କେତେକ ବିରକ୍ତି ପ୍ରକାଶ କରୁଥିଲେ, ଆଉ ଯେଉଁମାନେ ଉଠି ସାରିଥିଲେ ସେମାନେ ଭାବୁଥିଲେ କିଏ ବଦ୍‌ରସିକ ଏପରି ଘଡ଼ଘଡ଼ ସୃଷ୍ଟିକରି ଚାଲିଛି ରାସ୍ତାରେ ।

ସୁବାସ କିନ୍ତୁ ଅନ୍ୟ ରାଜ୍ୟରେ ବୁଲୁଥିଲା । ଠିକ୍ ଯେପରି ତାର ମଟର ସାଇକେଲ ଚକ ଘୂରୁଥିଲେ ଖୁବ୍ ଶୀଘ୍ର ଗତିରେ ।



# ଦଗ୍ଧ ବସନ୍ତ

ସୁଚରିତା ଚିଠି ଲେଖିଛି—

ସେହି ପାଗେଳୀ ହୋଇ ଗୋଟା ଝିଅଟା — ଖୁବ୍ କମ୍ କଥା କହେ । ପାଞ୍ଚପଦ କହିଲେ ବି ପଦେ କଥାର ଉତ୍ତର ଦେବାକୁ ତାର ଖୁବ୍ ସମୟ ଲାଗେ । ଆଖିରେ ତାର କପଟ ବୋକା ବୋକା ଭାବ । ତାର ସେହି ଆଖିର ଚାହାଁଣୀର ମାଦକତାରେ ହିଁ ସୁଦୀପ୍ତ ବିଭୋର । କେତେ ଝିଅ ସେ ତା' ଜୀବନରେ ଦେଖିଛି । କେତେ ଅଳସ ମୁହୂର୍ତ୍ତ ତାର ସରସ ହୋଇଛି ଝିଅମାନଙ୍କ ମେଳରେ । କିନ୍ତୁ କାହିଁ, କାହାପାଇଁ ତ ସୁଦୀପ୍ତ ମନରେ ଏପରି ମାଦକତା ଆସିନାହିଁ । କାହାରି ପାଇଁ ତ ନୀରବ ମୁହୂର୍ତ୍ତରେ ସୁଦୀପ୍ତର ମନ ଆନ୍ଦୋଳିତ ହୋଇନାହିଁ । ଦୁର୍ବଳତା ପ୍ରକାଶ ପାଇନାହିଁ । ତେବେ ଏ ସୁଚରିତା ପାଇଁ ତା ମନରେ ଏ ଦୁର୍ବଳତା କାହିଁକି ?

ସୁଦୀପ୍ତ ଭାବୁଛି । ଖୁବ୍ ନିବିଡ଼ ଭାବରେ ଭାବୁଛି । ଘରେ ଜାନକୀ ରାତିର ଏ ନିସୂନ ମୁହୂର୍ତ୍ତରେ ତାର ପିଲାମାନଙ୍କୁ ନେଇ ହୁଏତ ଶୋଇ ସାରିବଣି । ଜାନକୀ ସୁଦୀପ୍ତର ସ୍ତ୍ରୀ । ତାହାର ଛୁଆଙ୍କର ଘୁଅମୂତ ଭିତରେ ବରୁଖି ଘାଣ୍ଟି ହେଉଥିବ । ମନେ ମନେ ହୁଏତ ସୁଦୀପ୍ତକୁ ଖୋଜୁଥିବ କିନ୍ତୁ ସୁଦୀପ୍ତ···

ଖୁବ୍ ହତାଶିଆ ଲାଗୁଛି ସୁଦୀପ୍ତକୁ । ତା ମନର ଦରଦାରେ ଜାନକୀର ଚିହ୍ନ ଆସୁଛି, ଚାଲିଯାଉଛି । କପଟ ଅସ୍ପଷ୍ଟ ଦିଶୁଛି ଜାନକୀର ପ୍ରତିବିମ୍ବ । ଆଉ ସୁଚରିତାର ଚିହ୍ନ ଅତି ଅଯାଚିତ ଭାବରେ ତା ମନରେ ପରିବ୍ୟାପ୍ତ ହେଉଛି ।

ଆଜି ଯେଉଁ ସୁଚରିତା ଅଙ୍କ ତାଙ୍କୁ ଚେତାବନୀ ଜଣାଇ ଚିଠି ଦେଇଥିଲେ । ଶାସ୍ତ୍ର ପୁରାଣର ଦୋହାଇ ଦେଇ ତାଙ୍କୁ ସତର୍କ କରାଇ ଦେଇଛନ୍ତି । ତା ଭାଷାରେ Beauty is to enjoy, not to tahew. ହୁଁ ମନେ ମନେ ଖୁବ୍ ହସିଲା ସୁଦୀପ୍ତ ।

ସୁଚରିତା ହୁଏତ ତାଙ୍କୁ ଠିକ୍ ଚିହ୍ନି ପାରିନାହିଁ । ନାରୀ ମନ ଚିହ୍ନିବାରେ ସୁଦୀପ୍ତ ଯେ ଜଣେ ସଫଳ ମନସ୍ତତ୍ତ୍ୱବିତ୍ ଏକଥା ବା ସୁଚରିତା ଜାଣିବ କପରି ? ସୁଚରିତା ମନର ପ୍ରତ୍ୟେକ ଅନ୍ଧକନ୍ଧ ପରୀକ୍ଷା ନିରୀକ୍ଷା କରି ସାରିଛି ସେ । ସୁଚରିତାର ଏ ଚିଠି । ଏ ଧମକ କେବଳ ଛଳନାର ଯେ ଏକ ନଗ୍ନରୂପ, ଏଥିରେ ଦ୍ୱିଧା କିଛି ନାହିଁ । ସୁଦୀପ୍ତ ଅଙ୍କ ଯୌବନ ଅତିକ୍ରମ କରି ସାରିଛି । ମାତ୍ର ସୁଚରିତା ଯୌବନର ଦ୍ୱାର ଦେଶରେ । ଆଖିରେ ତାର ମାଦକତା । ମନରେ ତାର ଲକ୍ଷଯୁଗର କାମନାର ନିଶା । ଗୋଟିକ ପରେ ଗୋଟିଏ କେତେ ଯୁବକଙ୍କର ପ୍ରତିଛବି ସେ ମନରେ ଆଙ୍କିଛି । ଯେତେ ଯୁବକଙ୍କୁ ସେ ସ୍ୱପ୍ନରେ ଦେଖିଛି, କାହା ରୂପରେ ବା ବିହ୍ୱଳ ହୋଇ ନିଜକୁ ନିଜେ ସେ ଭୁଲିଛି । ହେଲେ ସୁଦୀପ୍ତ ଆଃ—

ସୁଚରିତା ମନେ ମନେ ଖୁବ୍ ବିରକ୍ତି ପ୍ରକାଶ କଲା । ସୁଦୀପ୍ତର ବୟସ ଜ୍ଞାନ ନାହିଁ, ରସ ଜ୍ଞାନ ନାହିଁ, ଓଃ ଯୋଉ ତ ରୂପ । ସେଥିରେ ପୁଣି ବାମନ ହୋଇ ଚନ୍ଦ୍ର ଧରିବାକୁ ମନ । ଲୋଭ କେତେ ଦେଖ । ଲୋଭ-ଲୋଭରୁ ମୃତ୍ୟୁ ଆଃ—

ଖୁବ୍ କ୍ଷୁବ୍ଧ ହୋଇଛି ସୁଚରିତା । ଚିଠିର ପ୍ରତ୍ୟେକ ଧାଡ଼ିରେ ତାର ବିରକ୍ତି ଫୁଟିପଡ଼ିଛି । ତାର ଦେହ ସ୍ପର୍ଶ କରି ତା ମନରେ ଯେତିକ ଉତ୍ତାପ ସେତିକ ଉନ୍ମାଦନା । ଯେତିକ ବେପଥୁ ସୃଷ୍ଟି କରି ପାରିବା କଥା, ତାହା କରି ପାରିନ ସୁଦୀପ୍ତ । ପୋଡ଼ାମୁହାଁ ସବୁ କଥାକୁ ଖାଲି ହାଉ ହାଉ ହେଉଛନ୍ତି । ଯା ଲାଗି ସୁଚରିତାର ଅସନ୍ତୋଷ ସତେକି ଚିଠି ଚିରି ପଦାକୁ ବାହାରି ଆସିବ ।

ସବୁ ଝିଅ ଭଳି ସୁଚରିତା ବି ଖୁବ୍ ଗ୍ଲାଲକ୍, ଖୁବ୍ ଧୂର୍ତ୍ତ । ନିଜକୁ କେତେ ନିରୀହ କହିଲେ ବି ସେଇ ଆଦିମଯୁଗର ନାରୀ ଚରିତ୍ରର ସମସ୍ତ ସ୍ୱାର୍ଥପରତା ତା ଚରିତ୍ରରେ ପୂର୍ଣ୍ଣମାତ୍ରାରେ ରହିଛି । ସୁଦୀପ୍ତକୁ ଜଳେଇ ଜଳେଇ ନିଜେ ଆତ୍ମତୃପ୍ତି ପାଇବ ସେ ।

ହେଲେ ସୁଦୀପ୍ତ ! ହାତରେ ତାର ସୁଚରିତାର ଚିଠି । ଆଖିରେ ତାର ନିଭୃତ ସୁରର ଜିଜ୍ଞାସା । ସୁଚରିତା ଯାହା ଲେଖିଛି ତାହା ଠିକ୍, ନା ସେ ଯାହା ସୁଚରିତାକୁ ବୁଝିଛି ସେ ଠିକ୍ । ସୁଚରିତାକୁ ସେ ଭଲପାଏ । ଭଲପାଇବା ପାପ ନୁହେଁ । ତେବେ ସୁଚରିତା ଭଲ ଝିଅ, ଯିଏ ନିଜକୁ ଖୁବ୍ ଗ୍ଲାମର୍ ବୋଲି ଭାବେ । ତା ପଛ ଜୀବନ ବା ପୂର୍ବ ପ୍ରେମ ସମ୍ପର୍କରେ ତାଛଡ଼ା ଆଉ କେହି କିଛି ଜାଣନ୍ତି ନାହିଁ ବୋଲି ଭାବୁ । ସେଭଳି ଝିଅକୁ ଏଭଳି ଭଲପାଇ ସୁଦୀପ୍ତ କ'ଣ ଭୁଲ କରିନାହିଁ ?

ସେଦିନର ସେ ସାମାନ୍ୟ ହେଲେ ବି ଏକ ମାଦକତାଭରା ସ୍ମୃତି କଥା ମନେ ପଡ଼ୁଛି ସୁଦୀପ୍ତର । ଖୁବ୍ ଗଭୀର ସମସ୍ୟା ମନରେ ନେଇ ଶ୍ରାନ୍ତ କ୍ଲାନ୍ତ ଭାବରେ ଫେରିଥାଏ ସୁଦୀପ୍ତ । ହଠାତ୍ ପରେ ଆସି ଦେଖେ ସୁଚରିତା ତା ଷ୍ଟଡ଼ିରୁମ୍‌ରେ ପଶି ବହିପତ୍ର ଘଣ୍ଟାଘାଣ୍ଟି କରୁଛି । ସୁଦୀପ୍ତକୁ ଦେଖି ଫିକ୍ କରି ହସିଦେଲା ସେ । ସତେକି ସୁଦୀପ୍ତ ମନରେ ପ୍ରଜାପତିର ଡେଣା ଲାଗିଗଲା । ଇନ୍ଦ୍ରଧନୁର ରଙ୍ଗ ଶୋଭା ଖେଳିଗଲା ତା ପ୍ରାଣରେ । ଦେହସାରା ମାତାଲି ନିଆଁର ଲହର ଖେଳିଗଲା ।

ସେ ଧୀରେ ଖୁବ୍ ଧୀରେ ଯାଇ ସୁଚରିତା ପାଖରେ ଛିଡ଼ାହେଲା । ଧୀରେ ତା ହାତକୁ ନିଜ ହାତ ମୁଠାରେ ଆଣି ରଖିଲା । ସୁଚରିତା ଠାରେ କୌଣସି ପ୍ରତିବାଦର ଲକ୍ଷଣ ନାହିଁ । ସୁଦୀପ୍ତର ମନରେ ନିଆଁ ଲାଗିଛି । ଧୀରେ ଧୀରେ ସେ ସୁଚରିତାକୁ ନିଜ କୋଳକୁ ଟାଣିଆଣି ଅତି ଗଭୀର ଆଶ୍ଳେଷ ଭିତରେ ରଖିଲା । ତଥାପି ସୁଚରିତା ନୀରବ । ସଦୀପ୍ତ ପାଗଳଙ୍କ ଭଳି ତାକୁ ଗ୍ରାସ କରିବାକୁ ଯାଉଛି । ଆଉ ସୁଚରିତା—।

ସୁଦୀପ୍ତ ଚାହିଁଲା ଅତି ନିବିଡ଼ ଭାବରେ ସୁଚରିତାର ମୁହଁକୁ । ତାର ସେହି ମାଦକତାଭରା ଆଖିକୁ ।

ନା କୌଣସି ଅସନ୍ତୋଷର ଚିହ୍ନବର୍ଣ୍ଣ ନାହିଁ । ବରଂ ସମର୍ପଣର ପୂର୍ଣ୍ଣ ଚିତ୍ର ରହିଛି ଆଖିରେ । ସୁଦୀପ୍ତ ଖୁବ୍ ନିବିଡ଼ ଭାବରେ ଆଲିଙ୍ଗନ କଲା ସୁଚରିତାକୁ ଆଉ ସୁଚରିତା ଲାଜକୁଳୀ ଲତାଭଳି ମିଶିଯିବାକୁ ଚାହିଁଲା ସୁଦୀପ୍ତ ଦେହରେ । ମାତ୍ର ପରକ୍ଷଣରେ କ'ଣ ହେଲା କେଜାଣି ମନ ଉପରେ

ପୁଷ୍ପି ନମ୍ବରଟି ମାଗିଲା ସୁଚରିତା । ଆଜି ଦୂରେଇଗଲେ ନାଟକୀୟ ଗଣ୍ଡରେ ମୁହଁ ଓଠାରୁ—

"ତୁମକୁ ଦୁହାଇ ସୁଦୀପ୍ତ, ମୋତେ ରକ୍ଷା କର ।"

"ମୁଁ ପାଷଣ୍ଡ ନୁହେଁ ସୂରୀ । ତୁମ ମନ ବରୁଦ୍ଧରେ ଯାଇ, ତୁମସହ ଦୈହିକ ପ୍ରେମ ଆସ୍ୱାଦନ ମୋର ଲକ୍ଷ୍ୟ ନୁହେଁ । ମୋ ମତରେ ଏହା ପାଶବିକ ସ୍ଫୂର୍ତ୍ତି ।"

ଏହାପରେ ସୁଚରିତା ସହ ସୁଦୀପ୍ତର ଅନେକ ଥର ଦେଖାହୋଇଛି । ଅତି ସାଧାରଣ ଭାବରେ ଦୁହେଁ ଦୁହିଁଙ୍କୁ ଭେଟିଛନ୍ତି । ସତରେ ଯେପରି କିଛି ହୋଇ ନାହିଁ । ଏହି ଭାବ ଦୁହିଁଙ୍କ ମନରେ, ଦୁହିଁଙ୍କ ଗୃହ ଚଳନରେ ।

ମାତ୍ର ଆଜ ସୁଚରିତାର ଏ ଚିଠି ' କିଛି ବୁଝିପାରୁ ନ ଥିଲା ସୁଦୀପ୍ତ କାହିଁକି ଆକସ୍ମିକ ଭାବରେ ଏ ଚିଠି ଲେଖିଲା ସୁଚରିତା । ଏ ଚିଠି ପ୍ରେମର ନା ପ୍ରତିହିଂସାର । ପ୍ରଣୟର ନା ବିଦ୍ୱେଷର । ବିଦଗ୍ଧତାର ନା ଅସନ୍ତୋଷର ।

ଅନେକ ଲେଖକ କହନ୍ତି, ପ୍ରେମର ପ୍ରଥମ ସମ୍ବୋଧନ ଭାଇ ! ପ୍ରଣୟର ଶୁଭ ସୂଚନା ମୁହୂର୍ତ୍ତରେ ବିରକ୍ତିର ଭାବ । ନାନା ଆଦର୍ଶଗତ ଉପାଖ୍ୟାନ ପ୍ରଦାନ । ନିଜକୁ ଖୁବ୍ ଅଜ୍ଞତା ଭିତରେ ଘୋଡ଼େଇ ରଖିବାର ସଫଳ ଅଭିନୟ । ହେଲେ ସୁଚରିତା, କ'ଣ ସେ ଚାହେଁ । କ'ଣ ବା ତା ଚିଠିର ମୂଳ ଉଦ୍ଦେଶ୍ୟ ?

ଚିଠିଖଣ୍ଡି ପୁଣି ପଢ଼ିଲା ସୁଦୀପ୍ତ । ଖୁବ୍ ଭାବଗମ୍ଭୀର ଚିଠି ଲେଖିଛି ସୁଚରିତା । ଚିଠିର ପ୍ରତ୍ୟେକଟି ଅକ୍ଷରରେ ସତେକି ଆକର୍ଷଣ ରହିଛି ତା ପାଇଁ । ସୁଚରିତା ଖୁବ୍ ସୁନ୍ଦରୀ ।

କିନ୍ତୁ ତାର ସେହି ଲେଖା—"ମୁଁ ଅନାଘ୍ରାତ, ମୁହଁଚୋରା କୌଣସି ଯୁବକକୁ ଚାହେଁନ । ହେଲେ ତମେ, ମଣିଷ ଭୁଲ କରେ ! ଆଉ ଥରେ ଯେପରି ସେ ଭୁଲ ନ ହୁଏ" ସତେକି ଚେତାବନୀ ଶୁଣେଇଛି ସେ । ଗୁପ୍ତରେ କମ୍ପିତ ଅନ୍ତହୀନ ଦରିଜ ଅନୁଭବ କଲା ସୁଦୀପ୍ତ ! ହଠାତେ ସୁଚରିତା ତାକୁ

ଖୁବ୍ ଆଘାତ ଦେଇଛନ୍ତି । କିନ୍ତୁ ମଧୁମିତା ଯାହା କହୁଥିଲା । "ସୁଚରିତାକୁ ଅଳ୍ପ ଭାବିବନି ସୁଦୀପ୍ତ । ଖୁବ୍ ଚୁପ୍ତି ମୁହଁଖଣ୍ଡିକ । ତଳମୁହାଁ ଖୁବ୍ ଜଣେ । ସିଏ କହିବ ସେ କିଛି ଜାଣେନି । ହେଲେ…"

ମଧୁମିତା ଉପରେ ଖୁବ୍ ବିରକ୍ତି ପ୍ରକାଶ କରିଥିଲା ; ସୁଦୀପ୍ତ । ସୁଚରିତା ବିରୁଦ୍ଧରେ କିଛି ଶୁଣିବ ନାହିଁ ବୋଲି କହିଥିଲା ସେ ; କିନ୍ତୁ ମଧୁମିତା ଦୃଢ଼ଭାବେ କହିଥିଲା, "ମୋ ପ୍ରଣୟକୁ ଭଲ ପାଇବାକୁ ତମେ ଫୋକର ମାରୁଚ ସୁଦୀପ୍ତ । କିନ୍ତୁ ସୁଚରିତା । ଯାହାର ପଛଦିନ ତୁମେ ହୁଏତ ଜାଣିନା । ଯାହା ପଛରେ…"

"ଓଃ—ମଧୁ ! ତମେ ଯାଇପାର" ମଧୁମିତାକୁ ଖୁବ୍ ନିଷ୍ଠୁର ଭାବରେ ସେଦିନ ଫେରାଇ ଦେଇଥିଲା ସୁଦୀପ୍ତ । ବିତୃଷ୍ଣା ଆଖିରୁ ଲୁହ ପୋଛି ପୋଛି ଉଠି ଚାଲିଯାଇଥିଲା । ଯିବାବେଳେ କିପରି ରୁଦ୍ଧ ଆବେଗରେ କହିଥିଲା, "ମୁଁ ତୁମର ପ୍ରଣୟିନୀ ନୁହେଁ । ପ୍ରେମିକା ବି ନୁହେଁ, ତେବେ ମୁଁ ତୁମକୁ ଭଲ ପାଏ । ସୁଚରିତାଠାରୁ ତୁମେ ଦୂରେଇ ରହିଲେ ମୁଁ ଖୁସି ହେବି ।"

ଏତେ ରାଗ କାହିଁକି ମଧୁମିତାର ସୁଚରିତା ଉପରେ । ସୁଚରିତା ତ ସୁଦୀପ୍ତକୁ କହିଥିଲା ସେ ଆଦୌ ବିବାହ କରିବ ନାହିଁ । ଅବଶ୍ୟ ଏ କ୍ଷେତ୍ରରେ ବେଟ୍ ଦେବାକୁ ସେ ପଛେଇ ଯାଇଥିଲା । ସବୁ ଝିଅ ଏପରି କହିଥାନ୍ତି ସୁଚରିତା କହିଲା । ବିବାହ ପାଇଁ ତା ମନ ଯେ ବିଚଳିତ ନ ହେଉଥିବ, ଏକଥା କିଏ ବା ଜାଣେ । ତେବେ ମଧୁମିତା କହୁଛି ସୁଦୀପ୍ତ ତା ପାଲରେ ପଡ଼ିଛି । ସତରେ କ'ଣ ସୁଦୀପ୍ତ ସୁଚରିତା ପାଖରେ ସେ ହାର ମାନିବ ? ଜୀବନରେ ତାର କେତେ ଝିଅ ଆସିଛନ୍ତି । କେତେ ଉତ୍ସବମୁଖରିତ ଦିବସରେ ଜୀବନକୁ ତାର ଭିନ୍ନ କଳ ରୋଳରେ ଭରପୂର କରିଛନ୍ତି । କିନ୍ତୁ କୌଣସି ଝିଅ ପାଖରେ ସେ ହାର୍ ମାନି ନାହିଁ । ଜାନକୀ ହିଁ ତା ଜୀବନର ପ୍ରଥମ ପ୍ରଣୟିନୀ । ପ୍ରଥମ ସ୍ପର୍ଶାନୁଭୂତ ନାରୀ, ତାର ସ୍ତ୍ରୀ । ତାର ଆତ୍ମୀୟା, ତା ସୁଖ ଦୁଃଖର ସାଥୀ ।

ଆଉ ବିଶିଷ୍ଟା ଏଇ ସୁଚରିତା । ଖୁବ୍ ଚତୁରା, ନା, ନିଜକୁ ସଂଯତ କରିବାକୁ ଚେଷ୍ଟା କଲା ସୁଦୀପ୍ତ । ଅଜାଣତରେ ସୁଚରିତାର ଶାଢ଼ି ଉପରେ

ତା ଆଖିରୁ କେଇ ଟୋପା ଲୁହ ଝରିପଡ଼ୁଛି । ଖୁବ୍ ଦୃଢ଼ ମନରେ ଚିଠିଟିକୁ ଚିରି ଖଣ୍ଡ ଖଣ୍ଡ କରି ଦୂରକୁ ଫିଙ୍ଗିଦେଲା । ସୁଚରିତା ଅନ୍ୟର ପ୍ରେମିକା, ଅନ୍ୟମାନଙ୍କ ପାଇଁ ତା ମନରେ ଦୁର୍ବଳତା । ସେଠି ସୁଦୀପ୍ତ ଜୋର କରି ନିଜକୁ ରଖିବାକୁ ଚାହିଁବା ଅନୁଚିତ । ଜାନକୀ ତାର ଭଲ । ତାର ଏକାନ୍ତ ନିଜର, ଏକାନ୍ତ ଅନୁଗତ, ସୁଖ ଦୁଃଖର ସାଥୀ । ଜାନକୀ ଭଳି ସ୍ତ୍ରୀ ତାକୁ ମିଳିବ ନାହିଁ । କ୍ଷଣିକ ଉତ୍ତେଜନାରେ ଭୁଲି ଜାନକୀ ଭଳି ସ୍ତ୍ରୀ ସହ ପ୍ରତାରଣା ଆଦୌ ଠିକ୍ ନୁହେଁ ।

“କିନ୍ତୁ ଅନ୍ୟକୁ ଭଲପାଉଥିବା ସ୍ତ୍ରୀ ସହ ପ୍ରତାରଣା ନୁହେଁ । ନିଜକୁ ନିଜେ ବୁଝେଇବାକୁ ଚେଷ୍ଟା କଲା ସୁଦୀପ୍ତ, ଶ୍ରୀକୃଷ୍ଣ ଜୀବନରେ ରାଧା ହିଁ ପ୍ରଣୟିନୀ । କିନ୍ତୁ ଅନ୍ୟାନ୍ୟ ଗୋପିମାନେ···ରୁକ୍ମିଣୀ । ସତ୍ୟଭାମା··· ଏସବୁ ସତ୍ତ୍ୱେ ବି ଶ୍ରୀକୃଷ୍ଣ ପରମ ପୁରୁଷ । ପ୍ରେମର ସାକାର ମୂର୍ତ୍ତି···। ହେଲେ ସୁଦୀପ୍ତ ଜୀବନରେ ସୁଚରିତା ଦ୍ୱିତୀୟା ନାରୀ । ସେ ପୁଣି ଏପରି ଚିଠି ତେବେ ଲେଖିଲା କାହିଁକି ?

ସୁଚରିତାକୁ ମନରୁ ସମ୍ପୂର୍ଣ୍ଣ ଭୁଲିଯିବା ପାଇଁ ସଂକଳ୍ପ କଲା ସୁଦୀପ୍ତ । ମନର ଦୁର୍ବଳତାକୁ ମନରେ ମାରି ସଫଳ ଅଭିନୟ କରିବାକୁ ସ୍ଥିର କଲା ସେ । ଗୋଟିଏ ପରେ ଗୋଟିଏ ତା ଜୀବନରେ କେତେ ନାରୀ ଆସିଛନ୍ତି । ସୁଲୋଚନା, ବନଜା, ମଧୁସ୍ମିତା, ବିଜୟଲକ୍ଷ୍ମୀ, ତନୁଶ୍ରୀ ପ୍ରଭୃତି ଆହୁରି ଅନେକ । ସୁଦୀପ୍ତର ଦୃଢ଼ତା ପାଖରେ ସମସ୍ତେ ହାରି ମାନିଛନ୍ତି । ଗୋଟିକ ପରେ ଗୋଟିଏ ସମସ୍ତେ ଫେରିଯାଇଛନ୍ତି ତା ଜୀବନରୁ । ହେଲେ ସୁଚରିତା ପ୍ରଥମ ଝିଅ, ଯିଏ ତାକୁ ଆଜି ଠୋକ୍କର ଦେଇଛି । ନା ନିଜକୁ ଏ ବାଟରୁ ଅତି ନିର୍ମମ ଭାବରେ ଦୂରେଇ ନେବାକୁ ପଡ଼ିବ ।

ଚିଠି ଟୁକୁରାଗୁଡ଼ିକୁ ଉଠେଇ ଲାଇଟରରେ ଜାଳେଇ ଦେଲା ସୁଦୀପ୍ତ । ଭାରାକ୍ରାନ୍ତ ମନକୁ ଟିକିଏ ଶାନ୍ତ କରିବାକୁ ଖଣ୍ଡେ ସିଗାରେଟ୍ ଲଗାଇ ଖୁବ୍ ଦଟାଣ ଟାଣିଦେଲା । ଯାଃ, ସୁଚରିତାଟା ତେବେ ବି ତା ମନରୁ ଯାଉନି ।

ସେଦିନ ମଧୁମିତା କହୁଥିଲା । ତୁମେ ସୁଚରିତା କଥା କେତେ ଜାଣିଛ ସୁଦୀପ୍ତ । ସେ ପରିତୋଷକୁ ଭଲ ପାଉଥିଲା । ତାକୁ ହତାଶ କରି

ଏବେ ଅବନୀକୁ ଭଲ ପାଉଛି । ତାଙ୍କ ଦୁହିଁଙ୍କ ମଧ୍ୟରେ ଖୁବ୍ ଘନିଷ୍ଠତା ଜମି ଆସିଲାଣି । ଚିଠି ଦିଆ ନିଆ ଚାଲିଛି ।

ସେଦିନ ମଧୁମିତାର କଥାକୁ ହସରେ ଉଡ଼େଇ ଦେଇଥିଲା ସୁଦୀପ୍ତ । ହେଲେ ଆଜି କମିତି ତା ମନରେ ସନ୍ଦେହ ଆସୁଛି । ଅବନୀ ବୋଲି ସେହି ଅଜ୍ଞାତ ଯୁବକ ପ୍ରତି ଖୁବ୍ ରୋଷ। ପ୍ରତିହିଂସା ଆସୁଛି । ହେଲେ, ନା!··· ସୁଚରିତା ତାର ଯାହା କରିବାର କରୁ । ଯାହାକୁ ଧରି ନାଚିବାର ନାଚୁ । ତାର ଯାଏ ଆସେ କେତେ···

ହେଲେ ମନ ତାର ବୁଝୁ ନାହିଁ । ସୁଚରିତା, ସୁଚରିତା । ତା ଚତୁର୍ଦ୍ଦିଗରେ ସୁଚରିତାର ପ୍ରତିଛବି ଘୂରି ବୁଲୁଛି । ଆଃ, ସୁଦୀପ୍ତର କାନ୍ଦିବାକୁ ମନେ ହେଉଥିଲା । ଏ ଘନାବର୍ତ୍ତ ମଧ୍ୟରୁ ସେ ମୁକ୍ତ ଚାହେଁ । ସୁଚରିତାର ମାୟାଜାଲରୁ ସେ ଦୂରକୁ ଚାଲି ଯିବାକୁ ଚାହେଁ···ସୁଚରିତାକୁ ସମ୍ପୂର୍ଣ୍ଣ ଭାବରେ ମନରୁ ପାଶୋରି ଯିବାକୁ ଚାହେଁ ।

ସେଦିନ କଥାରେ କଥାରେ ସୁଚରିତା କହିଥିଲା, ଭଲ ପାଇବା, ପ୍ରେମ କରିବା ଆଉ ସେ ଦିଗରେ ଆଗେଇବା ଏକା କଥା ନୁହେଁ । ଯାଃ, ଏଡ଼େ ଛୁଆ ଝିଅଟା, ସେ ପୁଣି ସୁଦୀପ୍ତକୁ ଶିକ୍ଷା ଦେଇଥିଲା । ମନେ ମନେ ଖୁବ୍ ବିରକ୍ତ ହେଉଥିଲା ସୁଦୀପ୍ତ । ତା ନିଜ ଉପରେ ତାର ଖୁବ୍ ରାଗ ହେଉଥିଲା । ଏତେ ଗୁଡ଼ାଏ ଝିଅ, ସୁଚରିତାଠାରୁ ଢେର ସୁନ୍ଦର ହେଲେ ବି ସୁଦୀପ୍ତର ଚରିତ୍ରବତ୍ତାକୁ ସମ୍ମାନ ଦେଖାଉ ଥିଲେ । ତାର ଗମ୍ଭୀର ମୁହଁକୁ ଦେଖି ଶଙ୍କି ଛିଡ଼ା ହେଉଥିଲେ । ହେଲେ ଏ ସୁଚରିତାଟା ତାକୁ ଅପମାନ କରି ଚିଠି ଲେଖିବାକୁ ସାହସ କରିପାରିଲା କିପରି ? ସାମାନ୍ୟ ଏକ ଦୁର୍ବଳ ମୁହୂର୍ତ୍ତର ସୁଯୋଗ ଚତୁରୀ ସୁଚରିତା ଠିକ୍ ନେଇ ପାରିଛି । ଲୁହାକୁ ସୁଦୀପ୍ତ କରି ଠିକ୍ ସମୟରେ ଖୁବ୍ ଜୋରରେ ପାହାର ହାଣିଛି ଯେ—ଯେତେ ଶକ୍ତ ହେଉ ପଛେ ଲୁହାର ଆଉ ଚାରା କ'ଣ ? ବିଚରା ଚେପା ହୋଇ ଯାଉଛି, ଖୁବ୍ ଦୁର୍ବଳ ହୋଇ ଯାଉଛି ।

ରାତି କେତେ ନାହିଁ କେତେ ହେଲାଣି । ଘଣ୍ଟା ଦେଖିବାକୁ ସୁଦୀପ୍ତକୁ ଡର ଲାଗୁଛି । କେଇଟି ରାତି ଏହିପରି କଟିଗଲାଣି । କେଶବସ୍ତି

ମେଘକନ୍ୟାର କେଶଗୁଚ୍ଛ ଆକାଶ ସାରା ପରିବ୍ୟାପ୍ତ ହୋଇ ଚାଲିଛି । ରହି ରହି ମେଘ ଡମ୍ବରୁର ଗୁରୁଗମ୍ଭୀର ନିର୍ଘୋଷ କାନ ଥରାଇ ଦେଉଛି । ସୁଦୀପ୍ତ ସହିତ କାହିଁକି ଦୂରତା ମେଘକନ୍ୟାର ଲୁହରେ ଲୁହ ମିଶାଇ । ଆଃ—ସୁଚରିତାଙ୍କ କେଡ଼େ ନିଷ୍ଠୁର ସତରେ ।

× × ×

"ରେଶ ତରୁଣ ଗୃହିଁଲ ନଶି ନାଶେ ପାଶେ ନାହିଁ ବିବ୍ୟଡରୁଣ"

ଶାହାନାଇଁରେ ଖୁବ୍ ଉଚାଙ୍ଗ ଦରଦୀ ସ୍ୱର ଲୁଟିଉଠିଛି ବାଜାବାଲ୍—ଆଜ ସୁଚରିତାର ବାହାଘର । ନିଜେ ସ୍ଥିର କରି ଅବନୀ ସହିତ ସୁଚରିତାର ବିବାହ ହେଉଛି । ଘରେ ବାହାରେ ସମସ୍ତେ ଆନନ୍ଦ ମୁଖରିତ । କିନ୍ତୁ ସୁଚରିତା—ନିଜେ ଅସୁଖୀ ନ ହେଲେ ବି କାହିଁକି ପ୍ରେମ ବିବାହର ମାଦକତା ପାଇପାରୁନି ସେ । ଆଜି ଭଳି ଦିନରେ ସୁଦୀପ୍ତ ଦାସ ଆସିଲା ନାହିଁ । ରାଗରେ, ଅଭିମାନରେ ଅନେକଦିନୁଁ ସେ ସୁଚରିତାକୁ ଭେଟିବା ଛାଡ଼ି ଦେଇଛି । ଯାହା ଭି କେଉଁଠି ଭେଟ ହେଲେ ସୁଚରିତାକୁ ଆଡ଼େଇ ଚାଲି ଯାଇନି ସେ, ତେବେ କେବଳ ଉପର ଠାଉରିଆ ପଦେ ଦିପଦ କଥା କହି ଚାଲି ଯାଇଛି । ଆଜି ପାଇଁ ସେ ନିଜେ ନିମନ୍ତ୍ରଣପତ୍ର ପଠାଇଛି । ହେଲେ ସୁଦୀପ୍ତ···ଆଃ—ଯୋଉ ତ ମଣିଷ, ସେଥିରେ ପୁଣି ଏତେ ଅଭିମାନ ।

ସୁଚରିତା ମନରୁ ସୁଦୀପ୍ତକୁ ପାଶୋରି ଯିବାକୁ ଚାହେଁ । ଅବନୀ ତାର ନିଜର । ଏକାନ୍ତ ଭାବେ ସେ ଅବନୀର, କିନ୍ତୁ ଏ ପୋଡ଼ା ମୁହାଁଟା ଏତେ ତା ମନରେ ଆସୁଛି କାହିଁକି । ଯେତେବେଳେ ଅଯାଚିତ ଭାବରେ ସୁଦୀପ୍ତ ତା ପାଖକୁ ଆସୁଥିଲା, ସେତେବେଳେ ସେତ ସୁଦୀପ୍ତକୁ ଦୂରେଇ ଦେଉଥିଲା । କିନ୍ତୁ ଆଜିଭଳି ଦିନରେ, ଯେତେବେଳେ ସତକୁ ସତ ସେ ସୁଦୀପ୍ତକୁ ମନରୁ ପାଶୋରି ଯିବାର କଥା ସେତେବେଳେ ଏଭଳି ଭାବରେ ସୁଦୀପ୍ତ ତା ମନକୁ ତା ହୃଦୟକୁ ଆବୋରି ବସିଛି କାହିଁକି ? ସାମାନ୍ୟ ଖଣ୍ଡେ ଚିଠିକୁ କେନ୍ଦ୍ର କରି ଦୁହିଁଙ୍କ ମନରେ ଏତେ ମନାନ୍ତର । ମାଉସିଆଙ୍କ ଭଳି ସୁଦୀପ୍ତ ତା'ଠାରୁ ଖଣ୍ଡେ ଚିଠି ପାଇ ଦୂରେଇ ରହିଥିଲା ; କିନ୍ତୁ ସୁଦୀପ୍ତ ତାଠାରୁ ଯାହା ଚାହୁଁଥିଲା ଯୋର ଜବରଦସ୍ତି ତା ଠାରୁ ଆଦାୟ କରି ପାରିଥାନ୍ତା ।

ଭକାରୀଙ୍କ ଭଳି କେହି କଣ କୌଣସି ନାରୀମନ ଜୟ କରିପାରେ ? ଏଥିପାଇଁ ପୌରୁଷ ଆବଶ୍ୟକ । ନାହିଁ ନାହିଁ କହିବାର ନାରୀର ପ୍ରେମ କୌଶଳ । କିନ୍ତୁ ପୁରୁଷ...

ଛି—ସେଦିନ ମାଇଚଆଙ୍କ ଭଳି ସୁଦୀପ୍ତ କହିଥିଲା, ମୁଁ ପାଷଣ୍ଡ ନୁହେଁ ସୁଚି ! ମୁଁ ନାରୀ ମନ ବିରୁଦ୍ଧରେ ଯାଇ କାହା ସହିତ ପାଶବିକ ସମ୍ପର୍କ ରଖିବାକୁ ଚାହେଁନା । ପ୍ରେମ ଏକ ଉଦାତ୍ତ କ୍ଷଣିକ ଉତ୍ତେଜନା । ଉଭୟଙ୍କର ମାନସିକ ଉଦ୍ଧାମତାରେ ହିଁ ଏଥିରେ ଆନନ୍ଦ ନିହିତ । ତୁମେ ଭାବିନ ତୁମ ଇଚ୍ଛା ବିରୁଦ୍ଧରେ ତୁମ ସହିତ ମୁଁ କୌଣସି ସମ୍ପର୍କ ରଖିବି...

"ହୁଁ ! ସବୁ କଥାରେ ମିଛ । ତୁମେ ଯଦି ମୋତେ ଚାହୁଁଥିଲ ସୁଦୀପ୍ତ, ତେବେ ଜୋର ଜବରଦସ୍ତ କାହିଁକି ତୁମ ଦାବୀ ମୋ ଉପରେ ସାବ୍ୟସ୍ତ କଲନି ତୁମେ । ମୋ ଠିକ୍ ଭୁଲ ବୁଝି କାହିଁକି ତୁମେ ମୋଠାରୁ ଦୂରେଇ ରହିଲ ।" ଆହତ ମନନେଇ ଖୁବ୍ ବିଚଳିତ ହୋଇ ପଡ଼ିଲା ସୁଚରିତା । ଶେଷଥରକ ପାଇଁ ସୁଦୀପ୍ତ ଆସନ୍ତା କି ?

"ନାନୀ, ସୁଦୀପ୍ତ ଭାଇ ଆସିଛନ୍ତି । ବାହାରେ ଚୁପ୍ ହୋଇ ବସିଛନ୍ତି ଆଉ ଏ ବହି ଖଣ୍ଡିକ ତୋ ପାଇଁ ପଠାଇଛନ୍ତି । ସୁଚରିତାର ଭଉଣୀ ମାନସୀ ଆସି କହିଲା ଏକଥା ।

ଚମକି ପଡ଼ିଲା ସୁଚରିତା । ତାର ଅବଚେତନ ମନରେ ଚେତନା ଉଦ୍ରେକ ହେଲା । ମାନସୀଠାରୁ ବହିଖଣ୍ଡିକ ନେଇ ଦେଖିଲା ସେ । ସୁଚରିତା ବିବାହ ଉପଲକ୍ଷେ ତାର ସଦ୍ୟ ପ୍ରକାଶିତ ଉପନ୍ୟାସ, 'ମରୁଝରଣା' । ହୁଏତ ସୁଦୀପ୍ତ ତାକୁ ହିଁ ଲକ୍ଷ୍ୟ କରି ଏ ଉପନ୍ୟାସ ଲେଖିଛି । ବହି ଖଣ୍ଡିକ ନେଇ ନିଜ ଟ୍ରଙ୍କ୍‌ରେ ରଖିଲା ସେ । ବହି ଖଣ୍ଡିକୁ ସମସ୍ତଙ୍କ ଆଗରେ ଖୋଲି ପଢ଼ିବାକୁ ମନରେ ଭୟ ତାର ।

"ମାମୀ, ସୁଦୀପ୍ତବାବୁଙ୍କୁ ଟିକେ ଡାକନ୍ତୁ ନା ।" ସୁଚରିତାର କଣ୍ଠ ସ୍ୱର କୋପର ଟାଁ ଟାଁ ଶୁଭୁଛି ।

'ହଉ,' କହି ବାହାରକୁ ଚାଲିଗଲି ମାନସୀ । ସୁଚରିତା ଭାବୁଥିଲି କ'ଣ ଲେଖିଛି ଏ ବହିରେ । ତା ଚରିତ୍ରକୁ ଇଙ୍ଗିତ କରି, ଆକ୍ଷେପ କରି କିଛି ଲେଖି ନାହିଁ ତ ? ଯାଃ, ଲେଖକଗୁଡ଼ା ବଡ଼ ବଜ୍ଜାତ୍ । ନିଜକୁ ଲୁଚେଇ ଅନ୍ୟକୁ ଖୁବ୍ ଦୋଷ ଦେଇ ପାରନ୍ତି !

"ମୋତେ ଡାକିଲି ସୁଚରିତା !" ସୁଧାଂଶୁର କଣ୍ଠ କପରି ବିକୃତ ଶୁଭୁଥିଲି । ସୁଧାଂଶୁର ମୁହଁକୁ ଚାହିଁପାରୁ ନ ଥିଲି ସୁଚରିତା । ଆଜି କାହିଁକି ନିଜକୁ ଖୁବ୍ ଶ୍ରେଷ୍ଠ ମନେ କରୁଚି, ସେ ସୁଧାଂଶୁ ଆଗରେ ।

'ବସ,' ସୁଚରିତା ତା ନିଜ କଣ୍ଠକୁ ନିଜେ ବିଶ୍ୱାସ କରି ପାରିଲି ନାହିଁ ।

"ନା, ମୋର ଅନେକ କାମ ଅଛି । ମୁଁ ସଙ୍ଗେ ସଙ୍ଗେ ଚାଲିଯିବି । ତୁମ ବିବାହର ଏ ଶୁଭ ମୁହୂର୍ତ୍ତରେ ତୁମକୁ—ତୁମର ଦାମ୍ପତ୍ୟ ଜୀବନକୁ ଶୁଭଙ୍କର କରିବାକୁ ଭଗବାନଙ୍କ ଜଣାଇବାକୁ ଆସିଥିଲି । ମୁଁ ଅବଶ୍ୟ ଜାଣେନା, ତୁମେ ଆଜିର ଏ ଶୁଭ ଦିନରେ ମୋର ଏଠାରେ ଉପସ୍ଥିତିକୁ କପରି ଭାବରେ ଗ୍ରହଣ କରିଛ । ତେବେ କର୍ତ୍ତବ୍ୟ ଦୃଷ୍ଟିରୁ ଆସିଲି । ଆଚ୍ଛା, ମୁଁ ଆସୁଛି । ଆଉ ବେଶୀ ସମୟ ରହିଲେ ସତେକି ସେ କାନ୍ଦି ପକେଇବ ।

"ଟିକେ ବସ···" ଭୟ ଆଶଙ୍କା କ୍ଷୋଭ ସୁଚରିତା କଣ୍ଠରେ ।

"ମୋତେ କ୍ଷମା କରିବ ସୁଚରିତା ଦେବୀ । ମୁଁ ବ୍ୟସ୍ତ ଅଛି । ଆସୁଛି, ଅବନୀବାବୁଙ୍କୁ ଅଭିନନ୍ଦନ ଜଣାଇବ, ଆସୁଛି ।" ଉଦ୍‌ଗତ ଲୁହକୁ ଲୁଚେଇ ଦ୍ରୁତ ପଦରେ ସେଠାରୁ ପଳେଇଗଲି ସୁଧାଂଶୁ । ସୁଚରିତାର ମନରେ ଅନେକ କଥା ଆସୁଥିଲେ ବି କଣ୍ଠ ଫିଟି ସତେକି କିଛି ବାହାରି ପାରୁନି । ବେଦନାର ଗୁରୁ ବ୍ୟଥାରେ କପରି ସ୍ଥାଣୁ ପାଲଟି ଯାଉଛି ସେ । ସୁଧାଂଶୁ ଆଜି କେତେ ବଦଳିଯାଇଛି ସତେ । ସ୍ନେହରେ ତାକୁ ସୁଚି ଡାକୁଥିଲା ସେ—ହେଲେ, ଆଜି ସୁଚରିତା—କଥା କହୁ କହୁ କପରି ଆଖିରେ ଲୁହ ତାର ଢଳ ଢଳ ହୋଇଯାଉଛି । ଯାଃ, ମାଇଚିଆ । ବିବାହର ସମସ୍ତ ମାଦକତାକୁ ନଷ୍ଟ କରିଦେଲି ସୁଧାଂଶୁ । ସୁଚରିତାର ଛାତି କୋରି ହୋଇ

ସତେ କି ତୁମକୁ ତୁମେ ଚିହ୍ନି ପାରୁଛ । ଖୁବ୍ ଆଶ୍ଚର୍ଯ୍ୟ ଅନୁଭବ କଲା ସେ ।

"ନାନୀ, ସୁଦୀପ୍ତ ଭାଇ କୁଆଡ଼େ ଗଲେକି ?" ମାନସୀ ଚା ନେଇ ଆସି ପ୍ରଶ୍ନ କଲା ।

ସେ ଚାଲିଗଲେଣି । ସତେ ଯେପରି ଏ ପର୍ଯ୍ୟନ୍ତ ସେ ନିଜ ଭିତରେ କୋହକୁ ଚାପି ରଖିଥିଲା । ଆଉ ସେ କୋହ ବାଧା ବନ୍ଧନ ମାନିବାକୁ ପ୍ରସ୍ତୁତ ନୁହେଁ । ଭେଁ କରି କାନ୍ଦି ପକାଇଲା ସେ ।

"ଯାଃ, ତୁ ପୁଣି କାନ୍ଦିଲୁ ନାନୀ । ନିଜେ ତ ଅବନୀ ଭାଇଙ୍କୁ ତୁ ପସନ୍ଦ କରି ବିବାହ କରୁଛୁ, ପୁଣି କାନ୍ଦୁଛୁ କାହିଁକି । ଛିଃ, ତୁନିହ । ତୁ ତୋର କାନ୍ଦିବାରେ ଲାଗିଗଲୁ, ଆଉ ସୁଦୀପ୍ତ ଭାଇ ଆଜିଭଳି ଦିନରେ ଚା କପେ ବି ନ ଖାଇ ଚାଲିଗଲେ । ତୋ କଥା ଆଉ ହବନି ନାନୀ— ତୁନିହ ।"

ମାନସୀ ସୁଚରିତା ପାଖରେ ବସି ତା ଆଖିରୁ ଲୁହ ପୋଛି ଦେଲା । ସୁଚରିତାର କୋହ ଦ୍ୱିଗୁଣିତ ହେଲା । ସେ କଇଁ କଇଁ ହୋଇ କାନ୍ଦି ଉଠିଲା । ବିଚାରୀ ମାନସୀ ତ ଜାଣେନି ଯେ ସୁଚରିତା କାହିଁକି କାନ୍ଦୁଛି । ସେ ଜାଣେ ଏ ଘରର ଏତେ ଦିନର ସମ୍ପର୍କ ତୁଟେଇ ଚାଲି ଯିବାର ବ୍ୟଥାରେ, ନାନୀ ତାର କାନ୍ଦୁଛି । କିନ୍ତୁ ନାନୀ ତାର ଯେ କେଉଁ ଶରର ତୀକ୍ଷ୍ଣ ଆଘାତରେ ରକ୍ତରଞ୍ଜିତ ହୋଇ ବ୍ୟଥାରେ ବେଦନାରେ ଅନ୍ତର୍ଦାହରେ ପୀଡ଼ିତା ହୋଇ କଲବଲ ହେଉଛି ଏକଥା ବିଚାରୀ ଜାଣିବ ବା କାହିଁକି ?

"ତୁନିହ ନାନୀ, ତୁ ଏପରି କାନ୍ଦିଲେ ବୋଉ ଏଇନେ ପୁଣି କାନ୍ଦିବ ।" ନାନୀକୁ ବୁଝାଉ ବୁଝାଉ ନିଜେ କାନ୍ଦି ପକେଇଲା ମାନସୀ । ଯାଃ ଏ ଲୁହ ବଡ଼ ସଂକ୍ରାମକ । ଏହାର ବ୍ୟାପ୍ତି ଖୁବ୍ ବ୍ୟାପକ । କାନ୍ଦିବାରେ ଯେ ଆନନ୍ଦ ଅଛି, ଆତ୍ମତୃପ୍ତି ଅଛି ଏକଥା କାନ୍ଦିବା ବାଲାଏ ହିଁ ଜାଣନ୍ତି ।

ଶାହାନାଇ ଗହ୍ୱାରୁଡ଼ି କାନ୍ଦୁଛି । ଆଉ ମାଇକ୍ ସଙ୍ଗୀତରେ ବି ବାଡ଼ପଡ଼ାଟା ସତେ କି ସୁଚରିତାକୁ ହିଁ ଲକ୍ଷ୍ୟ କରି ଗାଉଛି ।

"ତୁମ କଥା ଭାବି ଭାବି ପାହିଲା ଏ ଦୁଃଖ ରାତି
ରୁଧିର ରଞ୍ଜିତ ମୁଁ ଯେ ଶରବିଦ୍ଧ ବଣ ପକ୍ଷୀ ।"

ଯାଃ, ଭାକ୍ ! ସମସ୍ତେ ମିଳି ତାକୁ ଆଜି ସତେକି ଆକ୍ରମଣ କରିବାକୁ ସ୍ଥିର କରିଛନ୍ତି । ସମସ୍ତେ ମିଳି ତା ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛନ୍ତି । ତାକୁ ଏ ପରିସ୍ଥିତିରୁ ମୁକ୍ତ କରିବାକୁ ଚେଷ୍ଟାକଲା ସୁଚରିତା । ନାରୀ ସେ, ସବୁ ପରିସ୍ଥିତି ସହ ଅଭିନୟ କରି ଚାଲିବା ତାର ଧର୍ମ—ନାଁ—ସ୍ୱଭାବକୁ ସମ୍ପୂର୍ଣ୍ଣ ଭୁଲିଯିବାକୁ ହେବ । ଆଖି ପୋଛି ଛିଡ଼ାହେଲା ସେ । ସତେ କି ତାର କାନ୍ଦି ହୋଇ ନାହିଁ । ତଥାପି ମାଇକ୍‌ରେ ଗାଉଛନ୍ତି ।

“ନାଗୁଣୀର ମୁହଁ ହସ ନୁହେଁ ଅମୃତର ଧାର
ଭୁଲି, ଗରଳ ଜ୍ୱାଳାରେ ପ୍ରେମିକ ହୁଏ ଅଧୀର ।”

ଯାଃ, ଭାକ୍ । ସୁଚରିତା ଉଠିଯାଇ ଶୋଇପଡ଼ିବାର ଅଭିନୟ କଲା ।



# ଶିକାରୀ

ପରିମଳ ଆଖିରେ ଆଜି ନିଦ ନାହିଁ । କେଜାଣି କେତେ ରାତି ଆସି ହେଲାଣି । ଘଣ୍ଟା ଦେଖିବାକୁ ତାର ଭୟ । ରାତିର ଏ ଘନ ଅନ୍ଧାର ଭିତରେ ପୂର୍ବ ସ୍ମୃତି ରୋମନ୍ଥନ କରି ଚାଲିଛି ପରିମଳ । ଦିନର ସମସ୍ତ କାର୍ଯ୍ୟବ୍ୟସ୍ତତା ଭିତରେ ନିଜକୁ ନିଜେ ଭୁଲିଯାଉଛି ସେ । ଗଦା ଗଦା ଫାଇଲ୍, ଲୋକମାନଙ୍କର ହାଇହାଲ୍ଲା ଭିତରେ କିପରି ଆଶ୍ୱସ୍ତି ଅନୁଭବ କରୁଛି ସିଏ । କିନ୍ତୁ କରିବ କ'ଣ ? ମୁଣ୍ଡଟା ତାର ଟଣ ଟଣ କରୁଛି । ସୁଦୀପ୍ତା ପାଇଁ କିପରି ଅହେତୁକ କ୍ରୋଧ ଆସୁଛି ତା ମନରେ । ଆଜି ଖୁବ୍ ମନେପଡ଼ୁଛି ସୁଦୀପ୍ତା ତାର । ନିଜକୁ ଯେତେ ସଂଯତ କରିବାକୁ ଚେଷ୍ଟା କଲେ ବି କାହିଁକି ବାରମ୍ବାର ସେ ଦୁର୍ବଳ ହୋଇପଡ଼ୁଛି । ଫାଇଲ୍ ଗଦାରେ ସୁଦୀପ୍ତା, ଲୋକ ଗହଳରେ ସୁଦୀପ୍ତା । ରାତିର ଏ ନିର୍ଜନ ପ୍ରହରରେ ବି ସୁଦୀପ୍ତା—ଯା । ନିଜ ଉପରେ ପରିମଳର ଖୁବ୍ ବିରକ୍ତି ଆସୁଥିଲା । ରାତିର ଏ ନିଝୁମ୍ ପ୍ରହରରେ ସୁଦୀପ୍ତା ହୁଏତ ତା ସ୍ୱାମୀର ବାହୁବେଷ୍ଟନୀ ଭିତରେ ରହି କହୁଥିବ—ମୁଁ ତୁମର, ଏକାନ୍ତ ଭାବରେ ତୁମର । ତୁମକୁ ପାଇ ନାରୀ ଜୀବନ ମୋର ସାର୍ଥକ ହୋଇଛି । ପୁଷ୍ପ ବିମଣ୍ଡିତ ହୋଇଛି । ହୁଏତ ସ୍ୱାମୀ ତାର ପରିମଳ ପ୍ରସଙ୍ଗ ଉଠାଇ ଥାଇପାରନ୍ତି । କିନ୍ତୁ ସୁଦୀପ୍ତା ହସି ହସି ସଫଳ ଅଭିନେତ୍ରୀ ଭଳି ଜବାବ୍ ଦେଉଥିବ, "ଯାଃ—ଆଜିର ଏ ରଙ୍ଗିନ୍ ମୁହୂର୍ତ୍ତକୁ ସେ ଲୋଫର୍‌ଟାର ନାଁ ପକାଇ ନଷ୍ଟ କରି ଦିଅନା ଡ଼ିଅର । ପରିମଳ ଇଜ୍ ଏ ଷ୍ଟ୍ରିଟ୍ ଲୋଫର୍ । ମରାତ୍ମକ ଲୋକ୍···

ଆଃ—ପରିମଳର ଗୁଡ଼ ଭିତରଟା ବେଦନାରେ ଜର୍ଜରିତ ହୋଇ ଉଠୁଛି । ନା, ଆଜି ଆଉ ନିଦ ହେବନି, ରାଜଧାନୀରେ ହୁଏତ ଆଜି ପୁଣି କାହାର ବାହାଘର ହେଉଛି । ରାତିର ଏ ନିର୍ଜନ ମୁହୂର୍ତ୍ତ ନିଃସଙ୍ଗତାକୁ ଗୋଟାଏ ବୁଢ଼ୀ ପାଟି ମେଲାଇ ମାଇକ୍‌ଟା ଖିନ୍ ଭିନ୍ କରିଦେଉଛି । ଆଉ ତା ସହିତ ନଷ୍ଟ ହୋଇଯାଉଛି ପରିମଳର ସ୍ମୃତି ରୋମନ୍ଥନ ।

ଆଜକୁ ପାଞ୍ଚ ଛ'ବର୍ଷ ତଳର କଥା । ପରିମଳ ସେତେବେଳେ ଓଡ଼ିଶାର ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ସବୁଆଡ଼େ ତା ପ୍ରଶଂସାର ଫୁଆର, ପରିମଳ ଜଣେ ପ୍ରତିଷ୍ଠିତ ସାହିତ୍ୟିକ, ପରିମଳ ଜଣେ ଓଜସ୍ୱିନୀ ବକ୍ତା । ପରିମଳ ଜଣେ ସୁଦକ୍ଷ ରାଜନୀତିଜ୍ଞ, ପରିମଳ ସେ ସମୟରେ ସମାଜରେ ଜଣେ ଉଚ୍ଚ ଦରର ବ୍ୟକ୍ତିତ୍ୱ ।

ନିଜ ଗାଁ ଠାରୁ କିଛି ଦୂରରେ ବାଗଲପୁର ଗାଁ । ଏକ ବିରାଟ ନିର୍ବାଚନ ସଭାରେ ଭାଷଣ ଦେଇ ଫେରୁଥାଏ ପରିମଳ । ସାଙ୍ଗରେ ତା ଦଳର କେତେକ ସମର୍ଥକ । ସଭାର ସଫଳତା ସମ୍ପର୍କରେ ଖୁବ୍ ଆଶାବାଦୀ ସମସ୍ତେ ।

ଏକ ବେପରୁଆ ହସ ହସି ସୁଦର୍ଶନ କହୁଥିଲା, "ବୁଝିଲେ ସାର ! ଯାହା ବା କିଛି ଭୋଟ ପାଇବାର ଆଶାଥିଲା ଶଳାଙ୍କର, ଆଜି ଆପଣଙ୍କର ଗୋଟିଏ ଭାଷଣରେ ସବୁ ସଫା । ଶଳାଙ୍କ ମୁହଁ ତ ଶୋତା ପଡ଼ିଯାଇଛି ।"

ପରିମଳ କିନ୍ତୁ ନିର୍ଲିପ୍ତ । ବିରାଟ ଦାର୍ଶନିକ ଭଳି ଜବାବ୍ ଦେଇଥିଲା, "ବୁଝିଲ ସୁଦର୍ଶନ ! ଭାଷଣ ବା ବ୍ୟକ୍ତିତ୍ୱ ଉପରେ ଆମ ଭାରତରେ ଭୋଟ ମିଳେ ନାହିଁ । ଭାରତୀୟ ଭୋଟ ସମ୍ପୂର୍ଣ୍ଣ ଭାବରେ ଭାଗ୍ୟ ଉପରେ ନିର୍ଭରଶୀଳ । ଭୋଟ ଆଉ ଲଟେରୀ ଆମର ଏଠି ସମାନ । ବାଜିଗଲା ତ ବାଜିଗଲା ନ ହେଲେ ଚିତ୍‌ପଟାଙ୍ଗ୍ । ଗତ ଥର ଯେଉଁମାନେ ଆମର ହୋଇ କାମ କରିଥିଲେ ଏଥର ସେମାନେ କାହିଁକି ଆମର ବିରୋଧୀ । କହିପାରିବ, କୌଣସି ଆଦର୍ଶ ଉପରେ ସେମାନଙ୍କର ବିରୋଧ ଭାବ ନାହିଁ । ବିରୋଧ ଭାବ ବ୍ୟକ୍ତିଗତ ସ୍ୱାର୍ଥ ଉପରେ ହିଁ ନିହିତ । କାହାର ପୁଅର ଚାକିରୀ, ଶଳାର ଟ୍ରାନ୍‌ସଫର, ଶାଳୀର Admission, ଜୋଇଁ ପାଇଁ quarter ବ୍ୟବସ୍ଥା, ବନ୍ଧୁ ପାଇଁ କ୍ୟାପିଟାଲ୍‌ରେ ଜମି

ଯୋଗାଣ, ଡ଼ିଲର ନିଯୁକ୍ତ, କଣ୍ଟ୍ରାକ୍ଟରମାନଙ୍କୁ କାମ ଯୋଗାଇ ଦେବା; ଏହିସବୁ ମୂଳରେ ମୁଁ ବାଧ୍ୟ । ମୁଁ ସେଥିରେ ପଶିବାକୁ ଚାହେଁନା, କିନ୍ତୁ ସେମାନେ ମୋତେ ସେଥିରେ ପୂରାଇବାକୁ ବାଧ୍ୟ କରିଥାନ୍ତି । ସେ କାମ ନ ହେଲେ ମୁଁ ଅକର୍ମା...

"ଅଜ୍ଞା ସେଠରେ ଲୋକଙ୍କର ଅବଶ୍ୟ ଅଭାବ ନାହିଁ । ତେବେ ଆପଣଙ୍କ ପ୍ରତି ଯୁବସମାଜର ତ ଶ୍ରଦ୍ଧା ରହିଛି, ସମ୍ମାନ ରହିଛି ।" ସୁଦର୍ଶନ ଅତି ଦୃଢ଼ ଭାବରେ ଜବାବ୍ ଦେଲା ।

"ତାହେଲେ ବିପଦ ତ ସେଇଠି ବେଶୀ ସୁଦର୍ଶନ, ଯୁବସମାଜର ସମର୍ଥନ କୌଣସି ନିର୍ଦ୍ଦିଷ୍ଟ ମତ ଉପରେ ନ ଥାଏ । ଥାଏ କ୍ଷଣିକ ଉତ୍ତେଜନାରେ, ସାମୟିକ ଉନ୍ମାଦନାରେ । ତେବେ ଏ କ୍ଷେତ୍ର ପାଇଁ ଯୁବକମାନଙ୍କ ସମର୍ଥନ ଅପରିହାର୍ଯ୍ୟ ।" ପରିମଳ ଅନ୍ୟମନସ୍କ ଭାବରେ ଉତ୍ତର ଦେଲା ।

"ସେ ଯାହାହେଉ ସାର ! ଆମେ ଏଥର ନିଶ୍ଚୟ ଜିତିବା ।" ସୁଦର୍ଶନର ମନୋଭାବକୁ ଠୋକର ମାରିବାକୁ ପସନ୍ଦ କରୁ ନ ଥିଲା ପରିମଳ ବା ଆଉ ଯୁକ୍ତିତର୍କ କରିବାକୁ ସାରାଦିନର ପରିଶ୍ରମ ପରେ ତାର ସ୍ପୃହା ନ ଥିଲା । ଖୁବ୍ ଅବଶ ଅନୁଭବ କରୁଥିଲା ପରିମଳ । ଲୋକ ମତରୁ ବୁଝୁଥିଲା ତାର ଏଥର ଜିତିବା ସୁନିଶ୍ଚିତ । ତେବେ ବି ମନରେ ଆଶଙ୍କା, ପ୍ରତି ମୁହୂର୍ତ୍ତରେ ଅବସ୍ଥାର ପରିବର୍ତ୍ତନ ଘଟୁଛି । ହରିଜନସାଇ, ମୁସଲମାନସାଇ, ଏଇ ସ୍ଥାନମାନଙ୍କରେ ବିରୋଧୀପକ୍ଷ ପ୍ରବଳ ପ୍ରଚେଷ୍ଟା ଚଳାଇଛି । ନାନା ପ୍ରକାର ପ୍ରଲୋଭନ ଭବିଷ୍ୟତ କର୍ମଯୋଜନାର ଇନ୍ଦ୍ରଜାଲ ବିଛୁଇଛି । ତେଣୁ ଜିତିବାର ଯଥେଷ୍ଟ ଆଶାଥିଲେ ବି ଆଶଙ୍କା ମନରେ ଆସୁଛି । ଖୁବ୍ ଅନ୍ୟମନସ୍କ ଭାବରେ ପରିମଳ ପାଦ ଘୋଷାରି ଘୋଷାରି ଚାଲିଛି ଆଗକୁ ।

"କିଏ ? ପରି କରେ ?"

"କିଏ ?" ପରିମଳର ସମସ୍ତ ଅନ୍ୟମନସ୍କତା ତୁଟିଗଲା । ଆଗରେ ତାର ସୁମୀ ମାଉସୀ, ଅନେକଦିନ ପରେ ପୁଣି ସାକ୍ଷାତ । ଗତ ନିର୍ବାଚନ ପରଠାରୁ ଆଉ ସାକ୍ଷାତ ମିଳି ନ ଥିଲା, ଆଜି ପୁଣି ସାକ୍ଷାତ । ନିଜକୁ ଖୁବ୍ ସଙ୍କୁଚିତ ମନେକଲା ପରିମଳ ।

"ହଁ, ମୁଁ ପରିମଳ, ମାଉସୀ । ତମେ ଭଲ ଅଛ ତ ?" ଶଙ୍କିତ ପ୍ରଶ୍ନ ପରିମଳର ।

"ହଁରେ ପୁଅ, ମଲ ଗଲ ତ ଆଉ ଏବେ ବୁଝିଲୁ ନାହିଁ । ଆଜ ଯେ ଚିହ୍ନିପାରିଲୁ ସେଇ ବହୁତ । ତୋ ମଉସା ଗଲା ପରେ କି ଦୁଃଖରେ ଯେ ଏ ଭଙ୍ଗା ନଉକା ମୁଁ ଓଟାରୁଛି ଭଗବାନ ହିଁ ଜାଣନ୍ତି । ପାଞ୍ଚ ପାଞ୍ଚଟା ଛୁଆଙ୍କୁ ନେଇ ଖାଲି ହାତରେ ମୁଁ ସୁଖରେ ଯେ ଥିବି ତୁ ବୁଝିବୁ କପରି ପୁଅ ।" ସୁମୀ ମାଉସୀଙ୍କ କଣ୍ଠସ୍ୱର ଖୁବ୍ ଓଦାଳିଆ ଶୁଭୁଥିଲା ।

"ନା ମାଉସୀ ! କଥା କ'ଣ କି ନାନାପ୍ରକାର ଜଞ୍ଜାଳ ଭିତରେ ମୁଁ ଆଉ ଯାଡ଼କୁ ଆସିପାରିନ..."

"ହଉ ପୁଅ ! ମୁଁ ବା ତୋର କିଏ ? ତୁ ଭଲ ଅଛୁ ତ ?"

"ହଁ—ସେମିତି ଅଛି, ଆଉ ପିଲା ସବୁ ଭଲ ଅଛନ୍ତି ତ ?"

"ହଁ—ତୁ ଆମ ଘରଆଡ଼େ ଟିକେ ଆସିବୁ ନାହିଁ । ତୁ ଆଜ ଇଆଡ଼େ ଆସିଛୁ ବୋଲି ପିଲାମାନେ ସମସ୍ତେ ଅପେକ୍ଷା କରି ବସିଛନ୍ତି । ମୁଁ ଏଇଠି କୋଉ ଯୁଗରୁ ଯେ ଅପେକ୍ଷା କରି ଛିଡ଼ାହୋଇଛି—ତୁ ଏଇନେ ଆସିଲୁ —ଆ —" ସୁମୀ ମାଉସୀଙ୍କ କଣ୍ଠରେ ପ୍ରାଣପୂର୍ଣ୍ଣ ଆବେଗ ।

"କିନ୍ତୁ ମାଉସୀ ! ଟିକେ କାର୍ଯ୍ୟଥିଲା, ଆଉ ଏମାନେ ସବୁ...

"ନା ସାର୍—ଆମେ ଆଗ କ୍ଲବ୍‌ଘରେ ବସିଛୁ । ଆପଣ ଆସନ୍ତୁ" ସୁଦର୍ଶନ ତୁରନ୍ତ ଜବାବ୍ ଦେଲା ।

"ତେବେ ଚାଲ ମାଉସୀ, ମୁଁ ଆସିଲେ ପୁଣି ମୋର ଅନେକ କାର୍ଯ୍ୟ ଅଛି । ମୁଁ ଆସୁଛି ସୁଦର୍ଶନ ।"

ସୁମୀ ମାଉସୀଙ୍କ ସାଥ ତାଙ୍କ ଘରକୁ ଯାଇଁ ପ୍ରଥମେ ଯାହାକୁ ଭେଟିଲା ପରିମଳ, ସେଇ ହେଉଛି ସୁଧାପ୍ରଭା । ଆଜ ଯାହାର ସ୍ମୃତି ତାର କଲିଜାକୁ ଛିନ୍‌ଭିନ୍ କରି କାଟିଖାଉଛି । ଯାହାର ନାଁ ସ୍ମରଣରେ ଏକ ଅହେତୁକ ବ୍ୟଥା ତା ପ୍ରାଣକୁ ଆବୋରି ବସୁଛି ।

ସେଇ ସୁଧାପ୍ରଭାକୁ ସେଦିନ ସୁମୀ ମାଉସୀଙ୍କ ଘରେ ପ୍ରଥମେ ଭେଟିଥିଲା ପରିମଳ । ମୁଣ୍ଡନୋଇଁ ପରିମଳକୁ ନମସ୍କାର କରିଥିଲା

ସୁଯାପ୍ତା । ୧୮-୧୯ ବର୍ଷର ସୁନ୍ଦର ଚେହେରାର ଝିଅଟି । ଅସାମାନ୍ୟ ସୁନ୍ଦରୀ ନ ହେଲେ ଗ୍ରାମ୍ୟ ସରଳତାରେ ସୁଯାପ୍ତା ପରିମଳଙ୍କୁ ଖୁବ୍ ସୁନ୍ଦର ଦେଖାଯାଉଥିଲା । ଏକ ପ୍ରଶ୍ନବାଚୀ ନେଇ ସୁଯାପ୍ତାକୁ ଅନେଇ ରହିଲା ପରିମଳ ।

"ଏଇଟି ମୋର ଦଉଡ଼ିଝିଅ ଧାପା-ସୁଯାପ୍ତା" ସୁମୀ ମାଉସୀ ଚିହ୍ନାଇ ଦେଲେ ।

"ଆରେ ! ଏ ଭିତରେ ସୁଯାପ୍ତା ତାହେଲେ ଏତେଟିଏ ହୋଇ ଗଲଣି । କ'ଣ କରୁଛ ଏଇନେ ?"

"ମୋର ଅବସ୍ଥାତ ଦେଖୁଛୁ ପୁଅ । ମାଟ୍ରିକ୍ ପରେ ଖୁବ୍ ଝୁଙ୍କ ଲଗାଇଥିଲା କଲେଜରେ ପଢ଼ିବ ବୋଲି । ମୋର ବା ଏତେ ଦୌଡ଼ କାହିଁ । ଯାହାହେଉ ଘରେଇ ଭାବରେ I. A ପରୀକ୍ଷାଟ ଦେଇ ଦେଇଛି । ଦେଖାଯାଉ କ'ଣ ହେଉଛି ।

"କ'ଣ ଧାପା, ପାଶ୍ କରିବୁଟି ?" ସହଜ ପ୍ରଶ୍ନ ପରିମଳର ।

"ନିଶ୍ଚୟ" ଦୃଢ଼ ଜବାବ୍ ଦେଇଥିଲା ସୁଯାପ୍ତା ।

"ତୁ ଯଦି ପରୀକ୍ଷାରେ ଭଲକରି ପାଶ୍ କରିଯାଉ, ତେବେ ତୋତେ ମୁଁ କଲେଜରେ ପଢ଼େଇବ ।" ପରିମଳ ସେହିପରି ଦୃଢ଼ତାର ସହିତ ପ୍ରତିଶ୍ରୁତି ଦେଇଥିଲା ।

ବିଶ୍ୱାସ ଅବିଶ୍ୱାସ ମଧ୍ୟରେ ବି କିପରି ସୁଯାପ୍ତାର ମୁହଁ ଉଜ୍ଜ୍ୱଳ ଦେଖାଯାଇଥିଲା ସେଦିନ । ସୁମୀ ମାଉସୀ ବି ଖୁବ୍ ଆନ୍ତରିକତାର ସହିତ ସେଦିନ କେତେକଥା ଗପିଯାଇଥିଲେ । ସୁମୀ ମାଉସୀ ଖାଇବାକୁ ବଳାଉଥିଲେ ବି କେବଳ ଗି କପେ ଖାଇ ସେଦିନ ଚାଲିଯାଇଥିଲା ପରିମଳ । ମୁଣ୍ଡ ଉପରେ ନିର୍ବାଚନର ବୋଝ, Head quarter କୁ ରାତିରେ ନ ଫେରିଲେ ନିଶ୍ଚୟ ଅସୁବିଧା ଅଛି ।

ତା ପରର ଘଟଣା ଅତି ସ୍ୱାଭାବିକ । ବିପୁଳ ସଂଖ୍ୟାରେ ଭୋଟ ପାଇ ପୁଣି ନିର୍ବାଚିତ ହୋଇଥିଲା ପରିମଳ । ଅଭିନନ୍ଦନ, ଜୟ ଜୟକାର ମଧ୍ୟରେ ଯେଉଁ ଖଣ୍ଡିକ ଚିଠିଟିଆ ଚିଠି ତାର ମନ ଆକର୍ଷଣ କରିଥିଲା, ସେ ହେଉଛି ସୁଯାପ୍ତାର ଚିଠି । ପରିମଳର ବିଜୟରେ ଅଭିଭୂତା ହୋଇ

ପରିମଳକୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ତାର ପରୀକ୍ଷାରେ କୃତିତ୍ୱ ସମ୍ପର୍କରେ ଜଣାଇ ପ୍ରତିଶ୍ରୁତି ରକ୍ଷା କରିବାର ଅଳି ଜଣାଇଥିଲା । ପରିମଳ ବି ତାର ପ୍ରତିଶ୍ରୁତି ଅନୁସାରେ ସୁଦୀପ୍ତାର ପଢ଼ାପଢ଼ିର ସମସ୍ତ ବନ୍ଦୋବସ୍ତ କରିଦେଇଥିଲା । ପଢ଼ାପଢ଼ିରୁ ମୁକ୍ତି ମିଳିଲେ ସାମୟିକ ସୁଦୀପ୍ତା ପରିମଳ ପାଖକୁ ଆସିବା ତାର ଏକ ରୁଟିନ୍‌ବନ୍ଧା କାର୍ଯ୍ୟରେ ପରିଣତ ହୋଇଥିଲା ତା ପରେ । ପରିମଳ ଜୀବନରେ ଅନେକ ନାରୀ ଆସିଥିଲେ । କିନ୍ତୁ ପରିମଳକୁ Caward ବେଦରଦୀ କହି ଫେରିଯାଇଥିଲେ । ନାରୀମାନଙ୍କ ପାଖରେ ପରିମଳ କିପରି ଅସ୍ୱାଭାବିକ ବ୍ୟବହାର କରେ । ସେଥିପାଇଁ ପାଠପଢ଼ିବା ଦିନଠାରୁ ଝିଅମାନଙ୍କ ମହଲରେ ତାର ବଡ଼ ବଦ୍‌ନାମ, ମାଇଚିଆ, ନପୁଂସକ । ସୁଚରିତା ଆସିଥିଲା ଜୀବନରେ ନିରାଶ ହୋଇ ଫେରିଥିଲା । ମଧୁସ୍ମିତା, ମମତା, ରେଣୁକା, ଏମିତି କେତେ । ଇନ୍ଦ୍ରଧନୁର ରଙ୍ଗ ଶୋଭାରେ ତା ମନକୁ ରସୋଜ୍ଜ୍ୱଳ କରିବାକୁ ଆଗେଇ ଆସିଥିଲେ । କିନ୍ତୁ ପରିମଳ କିପରି ଅଚଳ ମେରୁ ଭଳି ସେମାନଙ୍କ ମନର ଆବେଗକୁ ଠୋକର ମାରିଥିଲା । ସାଗରିକା ହିଁ ଥିଲା ତା ଜୀବନର ପ୍ରଥମ ନାରୀ ଯାହାକୁ ସେ ପ୍ରାଣପୂରି ଭଲ ପାଇଥିଲା । ପ୍ରାଣର ସମସ୍ତ ଆବେଗ, ଅନୁରାଗକୁ ଅଞ୍ଜୁଳା ଅଞ୍ଜୁଳା କରି ତା ପାଖରେ ଅଜାଡ଼ି ଦେଇଥିଲା । ସେହି ସାଗରିକା ତାର ମାନସୀ, ତାର ସ୍ତ୍ରୀ । ତା ସୁଖ ଦୁଃଖର ସାଥି, ଏକାନ୍ତ ଆତ୍ମୀୟା । ଏବେ ବି ସାଗରିକାର ସ୍ଥାନ ତା ମନରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରି ବସିଛି । ବର୍ଷୁଣୀ ରାତିର ଏ ନିର୍ଜନ ପ୍ରହରରେ ଦିନଯାକ ଖଟି ଖଟି ପରିମଳ କଥା ହିଁ ଚିନ୍ତାକରି ଶୋଇସାରିବଣି, ହେଲେ ପରିମଳ—ଛି—ନିଜ ଉପରେ ତାର ଖୁବ୍ ଘୃଣା ଆସୁଥିଲା । ଘରେ ତାର ପତିସ୍ୱାର୍ଥୀ ସ୍ତ୍ରୀ । ହୁଏତ ତାର କଥା ଭାବି ଆଖିରୁ ଲୁହ ଗଡ଼ାଉଥିବ । ଏଣେ ତାର ଏକାନ୍ତ ଅନୁଗତ ସ୍ୱାମୀ ପରନାରୀ ଚିନ୍ତାରେ ରାତି ଉଜାଗରରେ କଟାଉଛି—ଛି—କେଡ଼େ ହୀନ କଥା । କଡ଼ ଲେଉଟାଇ ଶୋଇଲା ପରିମଳ । ନା—ଆଉ ଆଦୌ ସେ ସୁଦୀପ୍ତା କଥା ଭାବିବ ନାହିଁ । ଆଦୌ ସେ ସୁଦୀପ୍ତା କଥା ତା ଚିନ୍ତାରେ ସ୍ଥାନ ଦେବ ନାହିଁ ।

କିନ୍ତୁ···ନା, ପରିମଳକୁ ଶେଷ ନକରି ହୁଏତ ସୁଦୀପ୍ତାର ସ୍ମୃତି ତାକୁ ଛାଡ଼ିବ ନାହିଁ । ନିଜକୁ କିପରି ନିଃସହାୟ ମନେ କରୁଥିଲା ପରିମଳ ।

ଓଡ଼ିଶାର କେତେକ ଶକ୍ତିଶାଳୀ ବ୍ୟକ୍ତିଙ୍କ ଗନ୍ଧିର ଏ ନିର୍ଜନ ପ୍ରାନ୍ତରରେ ନିଜର କଳାପୃଷ୍ଠ ବୋଗାମ୍ବନ୍ଧନ କରି କେମିତି ଅସହାୟ ଭାବରେ କାନ୍ଦୁଥିଲା ।

ଅନେକ ନାରୀ ତା ଜୀବନରେ ଆସିଥିଲେ ବି ସମସ୍ତଙ୍କୁ ସେ ପ୍ରତ୍ୟାଖ୍ୟାନ କରିଥିଲା । ନାରୀ ମାୟାର ସମ୍ମୋହନ ତାକୁ କେବେ ପଥଚ୍ୟୁତ କରି ନଥିଲା । ହୁଏତ ତାରୁଣ୍ୟର ମୋହରେ ସେ କାହା ପାଖକୁ ଖଣ୍ଡେ ଅଧେ ଖଣ୍ଡେ ଚିଠିଲେଖି ଦେଇଥିଲା । ହେଲେ ସୁଚିସ୍ମିତା—ସୁଚିସ୍ମିତାର ନିରୀହ ମୁହଁ, ସରଳ ବ୍ୟବହାର ପରିମଳକୁ କେମିତି ଅବଶ କରି ପକାଇଲା । ଦୁହିଁଙ୍କ ମଧ୍ୟରେ ଥିବା ଦୂରତ୍ୱ ଦିନକୁଦିନ କମି କମି ଆସିଲା । ପରିମଳ ପୁଣି ସତେକି ନୂତନ ଯୌବନରେ ପହଞ୍ଚିଲା । ଦିନଯାକର ସବୁ କର୍ମବ୍ୟସ୍ତତା ଭିତରେ ସୁଚିସ୍ମିତାର ଚିନ୍ତା ତାକୁ ଅବଶ କରି ପକାଇଲା । ପରିମଳ ନିଜକୁ ସଂଯତ କରିବାକୁ ଯେତେ ଚେଷ୍ଟା କଲେ ବି, ଅକ୍ଟୋପାସର ଲମ୍ବା ହାତ ବଢ଼ାଇ ସୁଚିସ୍ମିତାର ସ୍ମୃତି ତାକୁ ପାଖକୁ, ଆହୁରି ପାଖକୁ ଟାଣିଟାଣି ଆଣିଲା ।

"ଆଉ ସୁଚିସ୍ମିତା—ମୁହଁରେ ଯାହା ଅନିଚ୍ଛା ପ୍ରକାଶ କରୁନା କାହିଁକି ପରିମଳ ଭାବିଲା ସୁଚିସ୍ମିତା ତାର ବିମୁଗ୍ଧା ପ୍ରେମିକା ।" ଏଇ ଭାବନା ହିଁ ପରିମଳର ଭୁଲ । ଏଇ ଭାବନା ଉପରେ ନିର୍ଭର କରି ବହୁତ ଆଗେଇ ଯାଇଥିଲା ପରିମଳ । ସମସ୍ତ କାର୍ଯ୍ୟବ୍ୟସ୍ତତା ଭିତରେ ବି ସୁଚିସ୍ମିତାର ଚିନ୍ତା କିଛି ସମୟ ପାଇଁ ପରିମଳର ମନକୁ ଆଟବାରି ରଖିଥିଲା ।

ସେଦିନ କ'ଣ ଗୋଟାଏ ମିଟିଂରୁ ଫେରୁଥାଏ ପରିମଳ । ଖୁବ୍ ଚିନ୍ତିତ ଥିଲା ସେ । ସରକାରୀ ମଣ୍ଡ, ଜନହିତକର କାର୍ଯ୍ୟକ୍ରମ ନାଁରେ ତୁଚ୍ଛା ଆତ୍ମ ପ୍ରଚାର—ଜନସେବୀମାନଙ୍କର ନଗ୍ନ ଆତ୍ମକୈନ୍ଦ୍ରିକ ଚିନ୍ତାଧାରା—ସ୍ୱାର୍ଥକୈନ୍ଦ୍ରିକ ଅନୁଚିନ୍ତା, ଏସବୁର ନଗ୍ନରୂପ ଦେଖି ପରିମଳର ମନ ଖୁବ୍ ବ୍ୟଥିତ ହୋଇ ପଡ଼ିଥିଲା ସେଦିନ । ଗରିବ ଆଦିବାସୀ ହରିଜନ ପ୍ରଗତି ନାଁରେ କେତେଜଣ ତଥାକଥିତ ସମାଜସେବୀ, ନେତା ଆଉ ସରକାରୀ କର୍ମଚାରୀମାନଙ୍କର ତୁଚ୍ଛା ପ୍ରହସନ ପରିମଳର ସମସ୍ତ ପ୍ରଗତିଶୀଳ ଚିନ୍ତାଧାରାକୁ କେମିତି ବିଷାକ୍ତ କରି ପକାଇଥିଲା । ନିଜ ଉପରୁ ସମସ୍ତ ଦୃଢ଼ତା ତାର କମି କମି ଆସୁଥିଲା । ଜୟପ୍ରକାଶ ନୁହନ୍ତି ସ୍ୱୟଂ ଭଗବାନ ଆସିଲେ ବି ଏ ଦେଶକୁ ଆଉ ଅଧୋଗତି ପଥରୁ ରକ୍ଷା କରି ପାରିବେ ନାହିଁ ।

ତଳଠାରୁ ଉପର ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ବିକଟ ସ୍ୱାର୍ଥପରତାର ମହାଦାନବ ବିରାଟ ମୁଖ ବ୍ୟାଦାନ କରି ବସିଛି । ଦେଶ ସେବା ଏକ ମାଧ୍ୟମ । ଦେଶସେବା ନାଁରେ ସମସ୍ତେ ଆଜି ଆତ୍ମପ୍ରଚାରର ଗୃହାଁନ୍ତି ଆଉ ତାରି ମାଧ୍ୟମରେ ବ୍ୟକ୍ତିଗତ ସ୍ୱାର୍ଥପରତାର ପରିପୂର୍ତ୍ତି ହିଁ ସମସ୍ତଙ୍କର ଲକ୍ଷ୍ୟ । ପରିମଳ ନିଜକୁ ସେ ଗୋଷ୍ଠୀରୁ ଅଲଗା ଭାବି ପାରୁନି ବା ନିଜେ ସେ ଗୋଷ୍ଠୀର ପୂର୍ଣ୍ଣ ସଭ୍ୟ ବୋଲି ଗ୍ରହଣ କରି ପାରୁନି । କପରି ତ୍ରିଶଙ୍କୁ ଅବସ୍ଥାରେ ପଡ଼ି ବିଚରା ଖୁବ୍ ଅସ୍ୱସ୍ତି ଅନୁଭବ କରୁଛି । ଭାରାକ୍ରାନ୍ତ ମନନେଇ ଘରେ ପହଞ୍ଚି ଥମକି ଛିଡ଼ାହେଲା ସେ । ଆଗରେ ସୁପ୍ରିୟା, ତା କଳ୍ପନାର ନାୟିକା, ସ୍ୱପ୍ନ ସଙ୍ଗିନୀ ।

"ଆରେ ସୁପ୍ରିୟା ଯେ, କେତେବେଳୁ ଆସିଲୁଣି ?" ଅନୁରାଗ ପରିମଳ କଣ୍ଠରେ ।

"ପ୍ରାୟ ଘଣ୍ଟାଏ ହେବ ଆସିଲିଣି । ତମେ ଏତେ ବେଳଯାଏ କୁଆଡ଼େ ଯାଇଥିଲ କି ?" ସୁପ୍ରିୟା ମୁହଁରେ ଅନାବିଳ ହସର ଫୁଆରା ।

"ଗୋଟାଏ ମିଟିଂ ଥିଲା ।" ବସୁ ବସୁ କହିଲା ପରିମଳ । "ତେବେ ତୁ ଏ ଅବେଳରେ ଯେ ।"

"କହିବତ ଗୃଲିଯିବି" ହଠାତ୍ ସୁପ୍ରିୟା କଣ୍ଠରେ ଅଭିମାନ ।

"ଆରେ ନା ନା, ମୁଁ କ'ଣ ସେ କଥା କହିଲି । ତୁ ଗୃଲିଯିବୁ କାହିଁକି ?"

"ସେଦିନୁ ଆସି ନଥିଲି । ଆଜି ଆସିଲି, ଆଉ ତମେ କହୁଛ..." ଆଜି ସୁପ୍ରିୟା ଖୁବ୍ ସାହସୀ ପାଲଟିଯାଇଛି ।

"ନା, ମୁଁ ସେ କଥା କହୁନଥିଲି ଯେ । ଏତେବେଳ ହେଲାଣି, ତୁ ତ ଆଉ ଘରକୁ ଫେରିବାକୁ ବାହି ପାଇବୁ ନାହିଁ ।" ପରିମଳ ନିଜକୁ ସହଜ କରିବାକୁ ଚେଷ୍ଟା କରୁଥିଲା ।

"ଘରକୁ ଯାଇ ନପାରିଲେ କ'ଣ ଏଠି ରହିବାକୁ ସ୍ଥାନ ମିଳିବ ନାହିଁ ?" ଖୁବ୍ ବେପରୁଆ କଣ୍ଠସ୍ୱର ସୁପ୍ରିୟାର । ଆଜି ଏ ସାହସ କୁଆଡ଼ୁ ପାଇଲା ସୁପ୍ରିୟା । ପରିମଳ ଆଶ୍ଚର୍ଯ୍ୟ ହେଉଥିଲା ଯେତିକି, ବିବଶ ହେଉଥିଲା ବି ସେତିକି । କିନ୍ତୁ ତାର ଆଉ କିଛି କହିବାର ନଥିଲା ।

ରାତି ସେତେବେଳକୁ ପ୍ରାୟ ଅନେକ ହେଲାଣି । ପାଖ ଘରେ ଶୋଇଛି ସୁପ୍ରିୟା । ପରିମଳ କିନ୍ତୁ ଏ ପର୍ଯ୍ୟନ୍ତ ଶୋଇପାରି ନାହିଁ । କିପରି ଅସ୍ୱାଭାବିକ ଭାବରେ, ଅସ୍ୱସ୍ତି ଅନୁଭବ କରୁଛି ବିଚରା । ସୁପ୍ରିୟା କ'ଣ ଶୋଇସାରିଲାଣି । ଏତେଦିନର ପ୍ରତୀକ୍ଷା ପରେ ସୁପ୍ରିୟା ତା ପାଖକୁ ଆସିଛି। ଆଉ ସେ—ନା— ଉଠି ଛିଡ଼ାହେଲା । ପାଖ କବାଟରେ ଧୀରେ ଧୀରେ ହାତ ମାରିଲା ।

"କିଏ ? ପରିମଳ ଭାଇ ?" ଏ ପର୍ଯ୍ୟନ୍ତ ସୁପ୍ରିୟା ବି ଶୋଇନାହିଁ ।

"ନା—ହିଁ—ମୁଁ—" ନିଜକୁ ଖୁବ୍ ଶଙ୍କିତ ମନେକଲା ପରିମଳ । କ'ଣ ଭାବିବ ସୁପ୍ରିୟା । "ନା, ମୁଁ କ'ଣ କହୁଥିଲି କି, ତୁ ଏପର୍ଯ୍ୟନ୍ତ ଶୋଇନୁ କି ?"

"ତମେ ଏଯାଏ ଶୋଇନ ଯେ" ପଦାକୁ ବାହାରି ଆସିଲା ସୁପ୍ରିୟା । ଆଃ—ସୁପ୍ରିୟାଟା କେତେ ସୁନ୍ଦର ଦେଖା ଯାଉଛି ମ । ପରିମଳ ସତରେ ଯେପରି କାଉଁରୀ ଦେଶରେ ପଡ଼ୁଛି । ଆଉ କାଉଁରୀ ରାଇଜର ରାଜକୁମାରୀ ତାକୁ କାଉଁରୀକାଠି ଛୁଆଁଇ ନଳାମେଣ୍ଢା କରିଦେଉଛି । ଏଥିରୁ ମୁକ୍ତିପାଇବା ପାଇଁ ସେ କଣ୍ଠଫଟାଇ ଚିତ୍କାର କରୁଛି କିନ୍ତୁ ତା କଣ୍ଠ ସତେ ଯେପରି କେହି ଶୁଣିପାରୁ ନାହାନ୍ତି । କଣ୍ଠ ତାର ସୁଖି ଅଠା ଅଠା ଲାଗୁଛି । ଆଖିକୁ ସବୁ ଝାପ୍‌ସା ଦେଖା ଯାଉଛି ଆଉ ସେହି ଝାପ୍‌ସା ଅନ୍ଧାର ଭିତରେ ସୁନ୍ଦର କମନୀୟ ମୁହଁଟି ଉଜ୍ଜ୍ୱଳ ଦେଖା ଯାଉଛି । "ଆଃ—ପରିମଳ ଆଜି ପାଗଳ ହୋଇଯିବ କି ?"

"ପରିମଳ ଭାଇ" କାମନାର ଶତପୁଷ୍ପଶର ସନ୍ଧିକି ମାରିଲା ସୁପ୍ରିୟା ।

"ଉଁ-ହିଁ-କ'ଣ କହୁଥିଲି କି, ନିଦ ତ ନାହିଁ । ଆଃ ବସି ଗପ କରିବା" ନିଜକୁ ଲୁଚେଇବାକୁ ଖୁବ୍ ଚେଷ୍ଟା କରୁଥିଲା ପରିମଳ ।

ସୁପ୍ରିୟା ମୁହଁରେ ସରୁ ହସ । ସତରେ ପରିମଳକୁ ଯେପରି ସେ ଭଲକରି ଜାଣିସାରିଛି । ନିଜକୁ ଲୁଚେଇବାକୁ, ନିଜ ପ୍ରବୃତ୍ତିକୁ ଘୋଡ଼େଇବାକୁ ବୃଥା ଚେଷ୍ଟା କରିଥିବା ପରିମଳର ସମସ୍ତ ଅପକୌଶଳକୁ ସତେ କି ସେ ଜାଣିପାରିଛି । ସୁପ୍ରିୟା ମୁହଁକୁ ଚାହିଁ ପରିମଳକୁ ଖୁବ୍ ସଙ୍କୋଚ

ଲାଗୁଥିଲା । ନିଜର ଦୁର୍ବଳତା ଉପରେ ନିୟନ୍ତ୍ରଣ ଆଣିବାକୁ ବୃଥା ଚେଷ୍ଟା କରୁଥିଲା ସେ, କିନ୍ତୁ ସବୁ ବୃଥା ।

ପରିମଳ ଧୀରେ ଯାଇଁ ସୁପ୍ରିୟାର ହାତଧରି ତାକୁ ନିଜ ଆଡ଼କୁ ଟାଣିଆଣିଲା । ନା—କିଛି ଆପତ୍ତି ନାହିଁ ସୁପ୍ରିୟାର । ଧୀରେ ଧୀରେ ପରିମଳ ସୁପ୍ରିୟାକୁ ସମ୍ପୂର୍ଣ୍ଣ ଭାବେ ଆବୋରି ବସିଲା । ସାମାନ୍ୟ ପ୍ରତିବାଦ ପରେ ସୁପ୍ରିୟା ପରିମଳ ପାଖରେ ନିଜକୁ ସମ୍ପୂର୍ଣ୍ଣ ଭାବେ ସମର୍ପଣ କରିଦେଲା ।

"ପ୍ରିୟା—ମୁଁ ତୁମକୁ ଭଲପାଏ ପ୍ରିୟା, ଖୁବ୍ ଭଲପାଏ । ତୁମେ ମୋର ସବୁଦିନେ "ନିଜର ହୋଇ ରହିବତ ।" ପରିମଳ କଣ୍ଠରେ ଭରା ଆବେଗ । ଆଜି ସତେ କି ବହୁବର୍ଷ ପଛକୁ ଫେରିଯାଇଛି ପରିମଳ । ମୁହଁରେ ତାର ଭରା ତାରୁଣ୍ୟର ଝଙ୍କାର । ପ୍ରାଣରେ ତାର ଅନବଦମନୀୟ ଆକାଙ୍କ୍ଷାର ଉଚ୍ଛଳ ତରଙ୍ଗ । ଘର ସଂସାର କିଛି ଆଜି ତାର ମନରେ ନାହିଁ । ସବୁ ଉପରେ ସୁପ୍ରିୟାର ଶାନ୍ତ ସରଳ ଯାଦୁକରୀ ସମ୍ମୋହନ । ପରିମଳ ମନରେ ଶିହରଣ । ପ୍ରାଣରେ ବେପଥୁ, ଶରୀରରେ ଉଦ୍ଦାମ ବିଦ୍ୟୁତ୍ ସ୍ଫୁରଣ ।

"କୁହ ପ୍ରିୟା ! ମୋ ପ୍ରଶ୍ନର ଉତ୍ତର ଦିଅ ?" ବ୍ୟଗ୍ରତା ପରିମଳ କଣ୍ଠରେ ।

"ମୋତେ ଭୁଲ ବୁଝିବ ନାହିଁ ତ ପରିମଳ ଭାଇ···" ଶଙ୍କିତ ପ୍ରଶ୍ନ ସୁପ୍ରିୟାର ।

"ତୁମକୁ ଭୁଲ ବୁଝିଲେ ମୁଁ କାହାକୁ ଆଉ ଠିକ୍ ବୁଝିବି ପ୍ରିୟା । କୁହ···"

"ମୁଁ-ମୁଁ-ମୁଁ ଆଉ ଜଣକୁ ଭଲପାଏ ।" ରହି ରହି ଉତ୍ତର ଦେଲା ସୁପ୍ରିୟା ।

"କିନ୍ତୁ···ତୁ···

"ମୋତେ ଭୁଲ ବୁଝିବ ନାହିଁ ପରିମଳ ଭାଇ, ତମେ ମୋତେ ସବୁକିଛି ଦେଇଛ । ତୁମକୁ ମୋର ଅଦେୟ କିଛି ନାହିଁ, ହେଲେ ଏ ଦେହର ଅଧିକାରୀ ଅନେକ ହୋଇ ପାରନ୍ତି । ମନ କିନ୍ତୁ ଜଣକର, ମୁଁ ଅନେକଦିନୁ ଅନ୍ୟର ହୋଇସାରିଛି···"

ସତେକି ଆକସ୍ମିକ ବାତ୍ୟାଘାତ ଘଟିଲା । ପରିମଳର ସମସ୍ତ ଅହଙ୍କାରର-ପୌରୁଷର-ପ୍ରତିପତ୍ତିର-ସତେକି ମୂଳୋତ୍ପାଟନ ହୋଇଗଲା । ଛାତିରୁ ଅବୁଝା କୋହ ଉଠି ଆସିଲା । ଛାତି ଉପରେ ଠା ଡାର କିଏ ଯେପରି ହଠାତ ଫାଡ଼ି ବିଦାରି ପକାଉଛି । ଅସହ୍ୟକ ଯନ୍ତ୍ରଣାର ଗହ୍ୱରରେ ପରିମଳ ଅବଶ ହୋଇପଡ଼ିଲା । ଫାଙ୍କା ଗାଧୁଆ ଘରେ ତାର ସୁପ୍ରିୟାର ଉଲଗ୍ନ ମୋହମୟୀ ଶରୀର ଲେଟୁଛି । କିନ୍ତୁ ସୁପ୍ରିୟା ନିଜେ ତା ଅନୁଭୂତିରେ ଦେଖାଇ ଅନ୍ୟ ପୁରୁଷର କଥା ଚିନ୍ତା କରୁଛି । ଏ ଆତ୍ମଶ୍ଳାଘା, ଏଭଳି ଚରମ ପ୍ରତ୍ୟାଖ୍ୟାନର ଆଉ କେବେ ସମ୍ମୁଖୀନ ହୋଇ ନ ଥିଲା ପରିମଳ । ତା ପ୍ରତିପତ୍ତିରେ ଆକୃଷ୍ଟ ହୋଇ ଅନେକ ମୁହୂର୍ତ୍ତରେ ଅନେକ ନାରୀ ଆସିଛନ୍ତି । ପରିମଳ ମୁହଁରୁ ପଦେ ମିଠାକଥା ଶୁଣିବାକୁ ଅନେକ ଚେଷ୍ଟା କରିଛନ୍ତି । ନିଜ ନିଜକୁ ପରିମଳ ଦେହରେ ସମ୍ପୂର୍ଣ୍ଣ ମିଳେଇ ଦେବାକୁ ଅନେକେ ସୁଯୋଗର ଅପେକ୍ଷା କରିଛନ୍ତି । ନାନାପ୍ରକାର ଇଙ୍ଗିତ କରିଛନ୍ତି । କିନ୍ତୁ···ପରିମଳ – ସମସ୍ତଙ୍କ ପାଖରେ ସେ ଏକ ଚରମ ନିଷ୍ଠୁର ପୁରୁଷ । ମାଇଚିଆ Coward··· । ହେଲେ, ଏ ସୁପ୍ରିୟା—ଖୁବ୍ ପାଟିକରି କାନ୍ଦିବାକୁ ମନ ହେଉଥିଲା ପରିମଳର । ବଡ଼ ପାଟିରେ କାନ୍ଦିବାକୁ ବି ପରିସ୍ଥିତି ସୁଯୋଗ ଦେଉଥିଲା । ସୁପ୍ରିୟା ତେବେ କ'ଣ ତାକୁ ଏହି ମାପ କାଠିରେ ତଉଲୁଛି । ମନରେ ଅନ୍ୟର ହୋଇ ଦେହ ଦାନକରି ପରିମଳକୁ ଭୁଲେଇ ରଖିବ । ପରିମଳର ନିଜ ଉପରେ ଖୁବ୍ ରାଗ ହେଉଥିଲା । ନିଜକୁ ନିଜେ ଖୁବ୍ ଘୃଣା କରୁଥିଲା ସେ । ଛାତିର ଅହେତୁକ କୋହ ଆଖିରୁ ଧାର ଧାର ଲୁହ ନେଇ ବୋହି ଆସୁଥିଲା ମୁହଁ ଉପରକୁ । ଏବେ ବି ସୁପ୍ରିୟା ଶୋଇଛି ତା ଛାତି ଉପରେ । ମାତ୍ର ତାର ସେହି ଯୁଆରିଆ ଯୌବନର ସ୍ପର୍ଶରେ ଆଉ ମାଦକତା ନଥିଲା ପରିମଳ ପାଇଁ । ସତେ ଯେପରି ସୁପ୍ରିୟାର ଉଲଗ୍ନ ଅବୟବ ଭିତରୁ ଶହ ଶହ ଶଙ୍ଖଚୂଡ଼ ହୋଇରେ ଫୁଙ୍କାର ଛାଡ଼ୁଥିଲେ । ଆଉ ସେହି ଫୁଙ୍କାରର ବିଷ ଜ୍ୱାଳାରେ ସତେଜ ପ୍ରଫୁଲ୍ଲ ପରିମଳର ଦେହରେ ଶଙ୍ଖୁଆ ବିଷ ଚରିଯାଉଥିଲା । ଛଟପଟ ହେଉଥିଲା ପରିମଳ । ଖୁବ୍ ଅତିଷ୍ଠ ହେଉଥିଲା । ଅନ୍ତର୍ଦାହ, ଆତ୍ମଶ୍ଳାଘା, ଆତ୍ମ ଯନ୍ତ୍ରଣାରେ ଛାତି ଭିତରୁ ତାର ଭୁହାକୁ ଭୁହା କୋହ ଉଠୁଥିଲା ।

"ତୁମେ ମନ ଦୁଃଖ କରୁଛ ପରିମଳ ଭାଇ ।" ପରିମଳର ମନଭାବ ହୁଏତ ବୁଝିପାରିଲା ସୁପ୍ରିୟା ।

ସୁପ୍ରିୟାର ପ୍ରତ୍ୟେକ କଥା ପରିମଳ ମନକୁ ବିଷାକ୍ତ କରୁଥିଲା । ତା କଣ୍ଠର ଏ ଅଭିନୟ-ବର୍ତ୍ତୁଳ ମୃଦୁଭାଗଭାଷା ପରିମଳ ଗୁଡିକୁ କ୍ଷତ ବିକ୍ଷତ କରି ପକାଉଥିଲା । ସୁପ୍ରିୟାକୁ ଗୁଣ୍ଡିକରି ଝିଙ୍କିନେଇ ତଳେ ଫିଙ୍ଗି ଦେବାକୁ ମନ ହେଉଥିଲା ତାର । କିନ୍ତୁ ଶରୀରରେ ତାର ଶକ୍ତି ନଥିଲା । ହାତ ତାର ଅବଶ ହୋଇ ପଡ଼ୁଥିଲା । ପାଟି ତାର ବିବଶ ହୋଇ ଯାଉଥିଲା । ନିଜକୁ ଯଥାସମ୍ଭବ ସଂଯତ କରି ସେ କହୁଥିଲା, "ନା ପ୍ରିୟା, ମନ ଦୁଃଖ କରିବାର କ'ଣ ଅଛି । ତୁ ଯେ ସ୍ପଷ୍ଟ କଥା କହିପାରିଛୁ ଏହା ହିଁ ଯଥେଷ୍ଟ । ହୁଏତ ଆଗରୁ ମୁଁ ଏ କଥା ଜାଣିଥିଲେ ଏତେବାଟ ଆଗେଇ ଯାଇନଥାନ୍ତି । ତେବେ ତୋ ଜୀବନ ସୁଖମୟ ହେଉ ଏହା ହିଁ ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା—ମୋତେ କ୍ଷମା କରିବୁ ।" ପରିମଳର କଣ୍ଠସ୍ୱର ଥରୁଥିଲା ।

"ମୁଁ ଜାଣେ ପରିମଳ ଭାଇ ତମ ମନର ବ୍ୟଥା ମୁଁ ବୁଝୁଛି, କିନ୍ତୁ ନିରୁପାୟ । ତମ ଘରେ ସାଗରିକା ଅପା । ସେ ତମର ମାନସୀ । ତମେ କ'ଣ ମୋତେ ନିଜର କରି ପାରିଥାନ୍ତ ! ତେଣୁ···"

"ବାସ୍—ଥାଉ, ଆଉ କିଛି କହନି ପ୍ରିୟା । ମୋ କୃତକର୍ମ ପାଇଁ ମୁଁ ତୋ ପାଖରେ କ୍ଷମା ମାଗୁଛି । ତୋତେ ଭଗବାନଙ୍କ ଦୋହି । ଆଉ ମୋତେ ଆଘାତ ଦେ'ନା ।" ନିଜ ଉପରେ ଯେତେ ନିୟନ୍ତ୍ରଣ ରଖିବାକୁ ଚେଷ୍ଟାକଲେ ବି ଆଖିରୁ ତାର ଲୁହ ନିଗିଡ଼ି ପଡ଼ିଲା । କଣ୍ଠସ୍ୱର ବେଦନାର୍ତ୍ତ ଶୁଣାଗଲା ।

"ଛି—ତମେ କାନ୍ଦୁଛ···" ସୁପ୍ରିୟାର ଅଭିନୟ ଖୁବ୍ ବଳିଷ୍ଠ ।

"ନା, କିଛି ନୁହେଁ—ଶୋଇପଡ଼" । କଡ଼ ଲେଉଟାଇ ଶୋଇଲା ପରିମଳ । ସୁପ୍ରିୟା ବି ପରିମଳର ଗମ୍ଭୀର କଣ୍ଠ ସ୍ୱରରୁ କ'ଣ ବୁଝିଲା କେଜାଣି ଚୁପ୍‌କରି ଉଠିଯାଇ ଅନ୍ୟଘରେ ଶୋଇପଡ଼ିଲା । ପରଦିନ ପରିମଳକୁ ସଙ୍ଗରେ ଘରକୁ ନେଇ ଯିବ ବୋଲି ଜିଦ୍ ଧରିଥିଲା ସୁପ୍ରିୟା । ଆଖିରୁ ଦି'ଟୋପା ଲୁହ ବି ଗଡ଼ାଇଥିଲା ସେ । କିନ୍ତୁ ପରିମଳ ନିଜ ମତରେ ଅଟଳ । ଯେତିକି ଗଙ୍ଗାଜଳି ସେତିକି ଫଳ ପାଇଲି, ଆଉ ନୁହେଁ । ବ୍ୟର୍ଥ ମନର ଅଭିନୟ କରି ଚାଲି ଯାଇଥିଲା ସୁପ୍ରିୟା । ପରିମଳ ପୂର୍ବ ପ୍ରତିଶ୍ରୁତି ଅନୁଯାୟୀ ଦୂରରୁ ସୁପ୍ରିୟାର ସମସ୍ତ ଦାୟିତ୍ୱ ନେଇଥିଲେ ବି

ଆଉ ସୁପ୍ରିୟାର ଖୁବ୍ ନିକଟତର ହୋଇ ନଥିଲା । ଏପରିକି ସୁପ୍ରିୟାର ବାହାଘର ଉତ୍ସବରେ ମଧ୍ୟ ସେ ଜାଣି ଶୁଣି ଦୂରେଇ ରହିଥିଲା । ଦୂରରୁ କମିତି ଅସ୍ୱସ୍ତି ଅନୁଭବ କରିଥିଲା । ସବୁଠାରୁ ବଡ଼କଥା, ଯାହାକଥା କହି ସୁପ୍ରିୟା ପରିମଳ ମନରେ ଆଘାତ ହାଣିଥିଲା, ତାହା ସହ ସୁପ୍ରିୟାର ବିବାହ ନହୋଇ ଅନ୍ୟ ଜଣେ ନୂତନ ପ୍ରେମିକ ସହିତ ହୋଇଥିଲା । ଏ ବିବାହ ପୂର୍ବରୁ କୁଆଡେ ତାର ପୂର୍ବ ପ୍ରେମିକ ଅନ୍ୟତ୍ର ବିବାହ କରି ଯାଇଥିଲା । ଦୂରରୁ ସବୁ ଶୁଣିଛି ପରିମଳ । ଜାଣି ଜାଣି ସୁପ୍ରିୟାଠାରୁ ଦୂରରେ ସେ ରହିଛି । ଅବଶ୍ୟ ଏଥିପାଇଁ ତାକୁ କମ୍ ସାଧନା କରିବାକୁ ପଡ଼ିନାହିଁ । ଏଥିପାଇଁ ଅନେକ ସମୟରେ ଲୁହ ନ କାଢି ଲହୁ କାନ୍ଦିଛି ସେ । ଅନେକ ଥର ଭାବିଛି, ସତରେ ସୁପ୍ରିୟା ଜଣେ ସଫଳ ଶିକାରୀ । ଗୋଟିକ ପରେ ଗୋଟିଏ ଶିକାରକରି ଚାଲିଛି ସେ । ଶିକାର ତାର ତୀବ୍ର ବିଷଦିଆ ତୀରମୁନରେ ଆଘାତ ପାଇ ଛଟପଟ ହେଉଛନ୍ତି, ଆଉ ଏହି ଛଟପଟ ଅବସ୍ଥା ଦେଖି ସେ ଦୂରରେ ହସୁଛି । ଆଜି ରାତିର ଏ ନିର୍ଜନ ପ୍ରହରରେ — ତାର ନୂଆ ପ୍ରେମିକ, ନୂଆ ସ୍ୱାମୀ, ନୂଆ ଶିକାରର କଣ୍ଠଲଗ୍ନା ହୋଇ ସେ ସାଫଲ୍ୟର ହସ ହସୁଥିବ । ଆଉ ପରିମଳ ଏକ ତୀବ୍ର ଯନ୍ତ୍ରଣାରେ ବିଚରା ଏବେ ବି ଛଟପଟ ହେଉଛି । ଶିକାରୀର ମୁନିଆ ତୀର ତା ଛାତିରୁ ଖଣ୍ଡ ଖଣ୍ଡ କଲିଜା ସତେକି ଟାଣି ଆଣୁଛି । ଆଃ—ଆଖିରୁ ଲୁହ ଝରୁଥିଲା ତାର ।

ଆଉ ଶୀତର ଶିଶିରଭିଜା ରାତିର ସ୍ତବ୍ଧ ତଟେ ଚକ୍ରବାକ କରୁଣ ଚିତ୍କାର ତୋଳି ସମଗ୍ର ପରିବେଶକୁ କିପରି ବେଦନାର୍ତ୍ତ କରୁଥିଲା । ପରିମଳ କାନ୍ଦୁଥିଲା, ରାତି କାନ୍ଦୁଥିଲା, ଚକ୍ରବାକ କାନ୍ଦୁଥିଲା । ଆଉ ନୂତନ ପ୍ରେମିକର କଣ୍ଠଲଗ୍ନା ସୁପ୍ରିୟା ହସୁଥିଲା । ଖୁବ୍ ହସୁଥିଲା ।



# ତେପଚ୍ଛ

ବାହାରେ ସୂର୍ଯ୍ୟର ପ୍ରଚଣ୍ଡ କିରଣ । ମେ ମାସର ଉତ୍ତପ୍ତ ମଧ୍ୟାହ୍ନ ସତେକି ସୂର୍ଯ୍ୟ ନିଆଁରେ ଜଳୁଛି । ଅତି ବିଭତ୍ସ ଭାବରେ ପୋଡ଼ିଯାଉଛି । ଉତ୍ତପ୍ତ 'ଲୁ'ର ଏକ ଚଞ୍ଚଳ ଲାଭାସ୍ରୋତ ସତେକି ମାଡ଼ି ମାଡ଼ି ଚାଲିଛି ସମସ୍ତ ଶାନ୍ତ ପରିବେଶକୁ ଅବ୍ୟକ୍ତ ବ୍ୟଥାରେ ଜର୍ଜରିତ କରି ପକାଇବ ବୋଲି । ଆମ୍ବ ଗଛର ଗହଳ ପତ୍ର ଭିତରୁ ବିଚରା କୋଇଲି କେଉଁ ମାନସିକ ବ୍ୟଥାରେ ଉଦ୍ଭ୍ରାନ୍ତ ବିକଳ ଭାବରେ କାନ୍ଦୁଛି । ଝିଙ୍କାରୀ କାନ୍ଦୁଛି ଅତି କରୁଣ ଭାବରେ ସୂର୍ଯ୍ୟ ତାପର ଅସହ୍ୟତା ପାଇଁ ନୁହେଁ, ଗ୍ରୀଷ୍ମର ଏହି ନିର୍ମମ [illegible] ନ ପାରିବାର ବ୍ୟଥାରେ । ସମଗ୍ର ପରିବେଶ ସତେକି କାନ୍ଦୁଛି — ସୂର୍ଯ୍ୟ ନିଆଁରେ ପୋଡ଼ି ସତେକି କାନ୍ଦୁଛି, ବିକଳରେ ଆର୍ତ୍ତନାଦ କରୁଛି — ଝିଙ୍କାରୀ କଣ୍ଠରେ, କୋଇଲିର ବ୍ୟଥାତୁର ସ୍ୱରରେ ।

ଆଜି ଚନ୍ଦ୍ରଲେଖା, ଅସ୍ୱାଭାବିକ ଯନ୍ତ୍ରଣାରେ ବନ୍ଦ କୋଠରୀରେ ବସୁରୀ ଖାଲି ଛଟପଟ ହେଉଛି । ଫୁଲ୍ ସ୍ପିଡ଼୍‌ରେ ଫ୍ୟାନ୍ ଘୂରୁଛି । କବାଟ ଝରକା ସବୁ ବନ୍ଦ, ତଥାପି ବାହାରର ଉତ୍ତାପ ଝଲକା ଝଲକା ଯେପରି କେଉଁ ବାଟରେ ଏଠି ଭିତରକୁ ପଶିଆସୁଛି । ଘର ଭିତରଟା ବି ଅସହ୍ୟ ଉତ୍ତାପ ଜ୍ୱାଳାରେ ପୋଡ଼ି ଯାଉଛି । ଚନ୍ଦ୍ରଲେଖାର ମନେହେଉଛି ଏ ବନ୍ଦ କୋଠରୀ ଭିତରେ ସମସ୍ତ ଆବରଣ ଖୋଲି ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ଶୋଇ ପଡ଼ନ୍ତା । ଏ ବନ୍ଦ କୋଠରୀରେ କିନ୍ତୁ ତାକୁ ଉଲଗ୍ନ ହେବାକୁ ଲାଜ ଲାଗୁଛି । କିନ୍ତୁ ଉତ୍ତାପର ଏ ଜ୍ୱାଳା···ଅହେତୁକ ଆଶ୍ୱସ୍ତି ମଧ୍ୟରେ ଦେହଟା ଖାଲି ଛଟପଟ ହେଉଛି । ଯେତେ ଚେଷ୍ଟା କଲେ ବି ଆଖିକୁ ତାର ଆଦୌ ନିଦ ଆସୁନି । ପଛ ଦିନର ସ୍ମୃତି ସତେକି ଗୋଟିକ ପରେ

ଗୋଟିଏ ତା ମାନସ ପଟରେ ପ୍ୟାରେଡ୍ କରି ବୁଲୁଛନ୍ତି । ଏ ପୂର୍ବ ସ୍ମୃତିରୁ ଦୂରେଇ ଯାଇଁ ତା ଓକିଲ ସ୍ୱାମୀ ପ୍ରକାଶ କଥା ମନକୁ ଆଣିବାକୁ ଯେତେ ଚେଷ୍ଟା କଲେ ବି, ପ୍ରକାଶର ମୁହଁ କିପରି ଝାପ୍‌ସା ଝାପ୍‌ସା ଦେଖା ଯାଉଛି, ଆଉ ସମୀରର ସ୍ମୃତି···ଆଃ···ପୋଡ଼ା ମୁହାଁଟା ଆଜି ଏତେ ମନେ ପଡ଼ୁଛି କାହିଁକି ? ଆଃ—ଯାଃ—ଭାଗ୍···

ସମୀର ଦାସ—କଲେଜ ଜୀବନରେ ବହୁ ଯୁବତୀଙ୍କର ସ୍ୱପ୍ନର ପୁରୁଷ ସମୀର ଦାସ । ଯାହାକୁ କଲେଜର ଅଧିକାଂଶ ଝିଅଙ୍କର ମାୟାବନ୍ଧନୀ ମଧ୍ୟରୁ ସମ୍ପୂର୍ଣ୍ଣ ମୁକ୍ତ କରି ଆଣି ନିଜ ଅକ୍ତିଆରରେ ରଖିଥିଲା ଚନ୍ଦ୍ରଲେଖା । ସେହି ସମୀର ଦାସ ଆଜି ତା ପାଖରେ ଅତି ଅବାଞ୍ଛିତ, ଅତି ଅଲୋଡ଼ା । ତେବେ ସେ ପୋଡ଼ାମୁହାଁ କଥା ତାର ଏତେ କାହିଁକି ମନେପଡ଼ୁଛି ।

ସେଦିନ ଏହିପରି ଗ୍ରୀଷ୍ମର ଏକ ଉତପ୍ତ ମଧ୍ୟାହ୍ନ ଥିଲା—ସମୀରର ଅପେକ୍ଷାରେ ବିଚଳିତ ହୋଇ ପଡ଼ିଥିଲା ଚନ୍ଦ୍ରଲେଖା । ଆଜି ସମୀରର ଇଣ୍ଟରଭିଉ ଫଳାଫଳ ଉପରେ ଦୁହିଁଙ୍କର ଭବିଷ୍ୟତ ନିର୍ଭର କରୁଥିଲା । ଏ ଭିତରେ ଅନେକ ଇଣ୍ଟରଭିଉ ଦେଇଛି ସମୀର । କିନ୍ତୁ ସବୁଥିରେ କେଜାଣି କାହିଁକି ଅକୃତକାର୍ଯ୍ୟ ହୋଇଛି ବିଚରା । ସତରେ କ'ଣ ହେଲା ସମୀରର ।

ଛାତ୍ର ହିସାବରେ ସମୀର ଥିଲା ରେଭେନ୍‌ସା କଲେଜର ଗୌରବ । ଖେଳ, ଡିବେଟ୍, ପ୍ରବନ୍ଧ ରଚନା କେବଳ ନୁହେଁ ଇଉନିଭରସିଟିର ଜଣେ ମେଧାବୀ ଛାତ୍ର ହିସାବରେ ତାର ସୁଖ୍ୟାତି ଖୁବ୍ ଥିଲା । ସେଇଥିପାଇଁ ସୁନନ୍ଦା, ମାଳବିକା, ତପସ୍ୱିନୀ, ଲିଲି, ବନଜା, ବନଲତା, ସୁସ୍ମିତା ପ୍ରଭୃତି ସମୀରର ଟିକିଏ ସାନିଧ୍ୟ ପାଇବା ପାଇଁ ପାଗଳୀ ହୋଇ ଉଠୁଥିଲେ । କିନ୍ତୁ ଏ ସମସ୍ତଙ୍କର ସଂସ୍ତ ପ୍ରଚେଷ୍ଟାର ମାୟାବନ୍ଧନୀକୁ ଅତି କୌଶଳର ସହିତ ଛିନ୍ନଭିନ୍ନ କରି ଚନ୍ଦ୍ରଲେଖା ସମୀରର ମନ ଜୟ କରିପାରି ଥିଲା । ସମୀର ଥିଲା ଅଦ୍ଭୁତ ମତବାଦର ଯୁବକ । ବାହ୍ୟ ଚାକଚକ୍ୟ ବା ଆଧୁନିକ ଫେସନ ପ୍ରତି ତାର କିପରି ଅସମ୍ଭବ ଘୃଣା ଥିଲା । ଚତୁରୀ ଚନ୍ଦ୍ରଲେଖା ବୁଝିପାରିଥିଲା ସମୀରର ମନୋଭାବ । ତେଣୁ ନିଜକୁ ଯଥାସମ୍ଭବ ସରଳ ଭାବରେ ସଜାଇ ସେ କଲେଜ ଯାଉଥିଲା

ଆଉ ହମାନୁସୂରେ ଚେଷ୍ଟା କରି ଗ୍ଳଥିଲା ସମୀରର ମନ ଜୟ କରିବା ପାଇଁ । ଶେଷରେ ତା ଚେଷ୍ଟାରେ କୃତକାର୍ଯ୍ୟ ହୋଇଥିଲା ଚନ୍ଦ୍ରଲେଖା । ଆଉ ସମୀର ସମ୍ପୂର୍ଣ୍ଣ ଭାବରେ ତାର ଅକ୍ତିଆରକୁ ଆସି ଯାଇଥିଲା । ସମୀର ସହ ଚନ୍ଦ୍ରଲେଖାର ସମୟଗୁଡ଼ିକ ଅତି ମଧୁର ଭାବରେ ଅତିବାହିତ ହୋଇଯାଇଥିଲା । ଏମିତି କି ଦୁହେଁ ପରୀକ୍ଷାର ଗୁରୁଦାୟିତ୍ୱକୁ ବି ଭୁଲି ଯାଇଥିଲେ । ସମୀର ବିନା ଅନର୍ସରେ ଅତି ସାଧାରଣ ଗ୍ରୁପ ଭାବରେ ବି. ଏ. ପାଶ୍ କଲା । ହତାଶ ହେଲେ ତାର ବାପା, ହତାଶ ହେଲେ ବନ୍ଧୁମହଲ । ହତାଶ ହେଲେ କଲେଜ କର୍ତ୍ତୃପକ୍ଷ । ଆଉ ଚନ୍ଦ୍ରଲେଖା କପରି ଅସ୍ୱାଭାବିକ ବେଦନାରେ ଜଳିଚାଲି । ତାର ପାଇଁ କେବଳ ଓଡ଼ିଶାର ଏତେବଡ଼ ଜଣେ ପ୍ରତିଭାବାନ ଗ୍ରୁପ ଆଜି ଏ ଅଧଃପତନର ସମ୍ମୁଖୀନ ହେଲା ।

ଚନ୍ଦ୍ରଲେଖା ଭାବିଥିଲା I. A. S. ନ ହେଲେ ନାହିଁ ଅତି କମ୍‌ରେ ସମୀର ନିଶ୍ଚୟ O. A. S. ପାଇପିବ । କିନ୍ତୁ ଏ ଯେଉଁ ଫଳାଫଳ ହେଲା, ଏଥିରେ ସମୀରର ଭବିଷ୍ୟତ ନିଶ୍ଚୟ ଅନ୍ଧକାରମୟ ହୋଇଯିବ । ତେବେ ତାର ଭବିଷ୍ୟତ···ଆଦର୍ଶ କଥା ଲୋକ ଦେଖାଣିଆ ପ୍ରବୃତ୍ତି । ପ୍ରେମ, ଭଲ ପାଇବା ସବୁକିଛି ବ୍ୟକ୍ତିଗତ ସ୍ୱାର୍ଥସାଧନର ଲୁକ୍କାୟିତ ଚକ୍ରାନ୍ତ । ସମୀର ଗ୍ଳକିରି ନ କରି ଯଦି ବେକାର ହୋଇଯାଏ, ତେବେ ତା ସହ ଭବିଷ୍ୟତ ଜୀବନ କଟାଇବା ଅସମ୍ଭବ । ସମୀର ଜଣେ ଅତି ସାଧାରଣ ଗରିବ ଘରର ଯୁବକ, ବିନା ଗ୍ଳକିରିରେ ତା ଘରେ ତାର ଘରଣୀ ହେବା ଅସମ୍ଭବ । ଆଜି ଶେଷ ସମାଧାନ । ଆଜିର ଇଣ୍ଟରଭ୍ୟୁରେ ଯଦି ସମୀର କୃତକାର୍ଯ୍ୟ ହୁଏ, ତେବେ ତା ସହିତ ହୁଏତ ସମ୍ପର୍କ ରକ୍ଷା କରାଯାଇ ପାରେ । ଆଉ ଯଦି ସେ ଅକୃତକାର୍ଯ୍ୟ ହୁଏ···ତେବେ···କପରି ଭାବରେ ସେ ସମୀରକୁ ପାଖରୁ ଦୂରେଇ ଦେବ···

ହଠାତ୍ କଲିଂ ବେଲ ବାଜି ଉଠିଲା । ଚନ୍ଦ୍ରଲେଖା ସଙ୍ଗେ ସଙ୍ଗେ ଯାଇଁ କବାଟ ଖୋଲି ଦେଲା । ଆଗରେ ସମୀର, ସମୀର ଦାସ । ଉଦ୍ବେଗର ଖରାରେ ସାଇକେଲ ପେଲି ପେଲି ଆସିଛି ବୋଲି ତାର ଗୋରା ଦେହଟା ବି କପରି କଳା ଦିଶୁଛି । ହସି ହସି ତାକୁ ସ୍ୱାଗତକଲା ଚନ୍ଦ୍ରଲେଖା··· ।

"ଓଃ ବାହାରେ ଭୟଙ୍କର ଖରା । ଏ ଖରାରେ ନ ଆସି ପରେ ଆସିଥିଲେ କ'ଣ ଚଳିନଥାନ୍ତା ?" ଚନ୍ଦ୍ରଲେଖା କଣ୍ଠରେ ଆଗ୍ରହ ।

"ବାହାରେ ଯିନା ଖରା, ହେଲେ ଏ ଘର ଭିତରେ ମୋ ପାଇଁ ଯେ ପୂରାପୂରି ହିମାଳୟ ପାହାଡ଼ର, ପାହାଡ଼ୀ କନ୍ୟା ସମସ୍ତ ଶୀତଳତା ନେଇ ମୋତେ ଅପେକ୍ଷା କରି ବସିଛି । ବାହାର ଖରା କ'ଣ ମୋତେ ବାଧିବ ?" ସହଜ ସରଳ ଉତ୍ତର ସମୀରର ।

"ଯାଃ, ତମର ଯୋଉ କଥା । ଆସ ଭିତରକୁ ଆସ, ଫ୍ୟାନଟା ଫୁଲ୍ ସ୍ପିଡ୍‌ରେ ଘୂରେଇ ଦେଉଛି । ତମେ ବସ କି ମୁଁ ସରବତ୍ ଆଣେ···" ଅତି ଆନ୍ତରିକତା ଚନ୍ଦ୍ରଲେଖା କଣ୍ଠରେ ।

"ସରବତ୍ ତ ନିଶ୍ଚୟ ପିଇବି, ହେଲେ ଆଜିର ଫଳାଫଳ କ'ଣ ଜାଣ ଚନ୍ଦ୍ରା । ମୁଁ ଆଜି ବି ଅକୃତକାର୍ଯ୍ୟ ହୋଇଛି ; ଅତି ନିର୍ବିକାର ସ୍ୱୀକାରୋକ୍ତି ସମୀରର ।

"ମାନେ, ଆଜି ବି ତୁମେ ପାରି ଉଠି ପାରିଲନି ?" କଣ୍ଠରେ ଭରା ହତାଶାର ସ୍ୱର ଚନ୍ଦ୍ରଲେଖାର ।

"ହଁ ଚନ୍ଦ୍ରା ! ମୁଁ ସମସ୍ତ ପ୍ରଶ୍ନର ଉତ୍ତର ଠିକ୍ ଭାବରେ ଦେଇଛି । ମୋ ଛାତ୍ର ଜୀବନର ଗଦାଗଦା ସାର୍ଟିଫିକେଟ ବୋର୍ଡ଼କୁ ଦେଖେଇଛି । ହେଲେ ମୋର କିଛି ହୋଇପାରିଲା ନାହିଁ । କିଏ କୃତକାର୍ଯ୍ୟ ହେଲା ଜାଣ ଚନ୍ଦ୍ରା ! ମାଳବିକା—ମାଳବିକା ମହାପାତ୍ର । ମୋଠାରୁ କପି କରି ଯିଏ ପାଶ୍‌ଟା କରି ଯାଇଥିଲା, ସେହି ପାଶ୍ କଲା । ଅଫିସରଙ୍କ ଗାଡ଼ିରେ ସେ ଆସିଲା ଏବଂ Appointment letter ନେଇ ତାଙ୍କରି ଗାଡ଼ିରେ ଗଲା ! ଗଲାବେଳେ ମୋତେ କିପରି ତାଚ୍ଛଲ୍ୟ ଭାବରେ କହିଲା, ତମେ ନିର୍ବୋଧ, ସମୀର !

"ତେବେ କ'ଣ ହେବ ସମୀର । ବାପା, ଭାଇ ଏବେ ତମ ସମ୍ବନ୍ଧ ମିଶିଲେ ମୋ ଉପରେ କିପରି ବିରକ୍ତି ପ୍ରକାଶ କରୁଛନ୍ତି । ମୁଁ ତୁମ ସପକ୍ଷରେ କିଛି କହିଲେ ବି ସେମାନେ ତୁମକୁ ଭାଗାବଣ୍ଡ, ଲୋଫର, ମାତହୀନ ବୋଲି କହୁଛନ୍ତି । ମୁଁ କ'ଣ କରିବି ସମୀର··· ।" ସମୀର ପାଖରୁ ମୁକ୍ତି ପାଇବା ପାଇଁ ଚନ୍ଦ୍ରଲେଖାର ଏ ହେଉଛି ପ୍ରଥମ ଅଦୃଶ୍ୟ ଶର ନିକ୍ଷେପ ।

"ଓଃ—ସତରେ ଚନ୍ଦ୍ରା, ମୁଁ ଆଜ ସମସ୍ତଙ୍କ ପାଖରେ ଅବାଞ୍ଛିତ ହୋଇଛି । ଜଣେ କପର୍ଦ୍ଦକ ଶୂନ୍ୟ ବେକାର ଯୁବକ ମୁଁ । ତୁମ ଭଳି ସୁନ୍ଦରୀ ଧନୀ ଦୁଲାଳୀ ପାଖରେ ଆଜ ମୋର ନିଶ୍ଚୟ ସ୍ଥାନ ନାହିଁ । ବାପ ମାଙ୍କ କଥା କାହିଁକି କହୁଛ ଚନ୍ଦ୍ରା, ତୁମ ମନକଥା ତୁମେ ଆଜ ପ୍ରକାଶ କରିଛ, ତାହା ହିଁ ଯଥେଷ୍ଟ । ତୁମ ଜୀବନରେ ଧୂମକେତୁ ଭଳି ମୁଁ ଆଉ ଦେଖା ଦେବି ନାହିଁ ଚନ୍ଦ୍ରା, ବରଂ ଭଗବାନଙ୍କୁ ପ୍ରାର୍ଥନା କରୁଛି ତୁମେ ସୁଖରେ ରୁହ—Bye···।" ଉଦ୍‌ଗତ ଅଶ୍ରୁକୁ ଲୁଚେଇବା ପାଇଁ ଦ୍ରୁତ ଗତିରେ ଘରୁ ବାହାରି ଯାଇଥିଲା ସମୀର ।

"ଶୁଣ, ମୋତେ ଭୁଲ ବୁଝନା । ମୋର କିଛି ଦୋଷ ନାହିଁ । ମୁଁ ବାପା ଭାଇଙ୍କୁ କିପରି ଅବମାନନା କରିବି ?" ଚନ୍ଦ୍ରଲେଖା କଣ୍ଠରେ ପ୍ରତାରଣାର ଅଶ୍ରୁ ।

'ମୋ ଭୁଲ ବୁଝିବାରେ କିଛି ଯାଏଆସେ ନାହିଁ ଚନ୍ଦ୍ରା—ଆସୁଛି···।' ପୁଣି ଆଗେଇଲା ସମୀର ।

"ଶୁଣ, ଖରାରେ ଆସିଛ, ସରବତ୍ ଟିକେ ପିଇଦେଇ ଯାଅ ।" କଣ୍ଠରେ ମମତାର ସ୍ପର୍ଶ ।

"ଏଇ ହାତରେ ମୋତେ କେତେ ଥର ସାଧା ପାଣି ପିଆଇଛ ଚନ୍ଦ୍ରା, ମୁଁ କିନ୍ତୁ ତାକୁ କ୍ଷୀର ଭାବି ପିଇଯାଇଛି । ଆଜ କିନ୍ତୁ ଏ ସରବତ୍ ବିଷ ଭଳି ଲାଗିବ, ଧନ୍ୟବାଦ···।" ଦ୍ରୁତ ଗତିରେ ଆଗେଇ ଯାଇଥିଲା ସମୀର । ସ୍ଥାଣୁ ଭଳି ଛିଡ଼ା ହୋଇ ରହିଥିଲା ଚନ୍ଦ୍ରଲେଖା ।

ତା ପରେ ଅନେକଦିନ ଅତିବାହିତ ହୋଇଗଲା । ସମୀର ବିରୁଦ୍ଧରେ ଚନ୍ଦ୍ରଲେଖା ଅନେକ ମନଗଢ଼ା ବଦ୍‌ନାମ କରିଥିଲା । ପ୍ରତିଶ୍ରୁତି ଅନୁସାରେ କେବେ ଆଉ ତା ଜୀବନରେ ସମୀର ଦେଖା ଦେଇନି । ଏପରିକି ତା ବାହାଘରେ ମଧ୍ୟ ଆସି କୌଣସି ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରି ନାହିଁ ସମୀର । ସମୀରକୁ ତାକୁ କେନ୍ଦ୍ର କରି ଯେଉଁ ଦୁର୍ନାମ ଲୋକ ମୁହଁରେ ପ୍ରଚାର କରାଯାଇଥିଲା, ଅତି ସଫଳ ଭାବରେ ସମୀର ନାମରେ ନିନ୍ଦା ଗାଇ ସେଥିରୁ ମୁକ୍ତି ପାଇଥିଲା ଚନ୍ଦ୍ରଲେଖା । ବାସର ରାତିର ପ୍ରଥମ ଦେଖାରେ ସ୍ୱାମୀ ପ୍ରକାଶ, ସମୀରର ପ୍ରଶ୍ନ ପଚାରିଥିଲେ ।

ସମୀର ସହ ତାର ସମ୍ପର୍କ ବିଷୟରେ ଜାଣିବାକୁ ଜିଦ୍ ଧରିଥିଲେ । ବାସର ଘରକୁ ଗୃହାଁ ଆଖିରେ ହାତଠାପା ଲୁହ ଆଣି ସ୍ୱାମୀଙ୍କୁ ଭୁଲେଇ ଦେଇଥିଲା ସେ । ସମୀର କମର ତା ପଛରେ ଗୋଡ଼େଇ ଗୋଡ଼େଇ ହତାଶ ହେବାରୁ ତା ନାଁରେ ବଦ୍‌ନାମ କରିଛି, ଘାପ ଛୁଇଁ ଶପଥ କରି କହିଥିଲା ସେ । ସ୍ୱାମୀ ତାର ଖୁବ୍ ଉଦାର ମଣିଷ । ଅତି ସହଜରେ ଏ କଥାକୁ ବିଶ୍ୱାସ କରିଯାଇଥିଲେ । ହେଲେ, ନିଜେ ଚନ୍ଦ୍ରଲେଖା ଏ ପର୍ଯ୍ୟନ୍ତ ଭୁଲିପାରି ନାହିଁ ସମୀରକୁ । ଆଜି କାହିଁକି ବାରମ୍ବାର ମନେ ପଡ଼ୁଛି ସେ ପୋଡ଼ାମୁହାଁ କଥା । ସ୍ୱାମୀ କୋର୍ଟକୁ ଯାଇଛନ୍ତି, ଗାଧି ମା ଖରାବେଳେ ଏକୁଟିଆ ଦେଖି ପାଖ କ୍ୱାର୍ଟରରେ ଭୁବନ ପୁଝାରୀ ସହ କ'ଣ ଫସର ଫସର ହେଉଥିବ । ମନକୁ ମନ ହସି ଉଠିଲା ଚନ୍ଦ୍ରଲେଖା, ଯାଃ—ଏ ଉତ୍ତର ବୟସରେ ବୁଢ଼ା ବୁଢ଼ୀ ହଟା ଯା ପ୍ରେମ ରସରେ ମାତିଛନ୍ତି ନା···

କଡ଼ ଲେଉଟାଇ ଶୋଇଲା ଚନ୍ଦ୍ରଲେଖା, ଅଃ—ନିଦ ହୋଇ ଯାଆନ୍ତା କି, ପୋଡ଼ା ମୁହାଁଟାର କଥା ଆଦୌ ମନକୁ ଆସନ୍ତା ନାହିଁ । ବାହାରେ କିଏ କଲିଂବେଲ୍ ଟିପିଲା କି ? କାନ ପାରିଲା ସେ, ହଁ ବାହାରେ କିଏ କଲିଂବେଲ୍ ଟିପୁଛି । ଲୁଗା ସଜାଡ଼ି ଉଠିଲା ଚନ୍ଦ୍ରଲେଖା, ଗାଧି ମା ନିଶ୍ଚୟ ।

"ଆରେ ରହ କବାଟ ଖୋଲୁଛି, ଟିକେ ତର ସହୁନ ନା କ'ଣ ?" ଅଳସ ଭାଙ୍ଗି କବାଟ ଖୋଲିଲା ଚନ୍ଦ୍ରଲେଖା, ହେଲେ ଏ କ'ଣ ? ଆଗରେ ସତେ କି ଭୂତ ଦେଖୁଛି ସେ । ଏ କିପରି ସମ୍ଭବ ହେଲା ? ବାହାଘର ହେବାର ଛଅ ବର୍ଷ ହେଲାଣି, ହେଲେ ତ ଏ ଆସି ନ ଥିଲା । ଆଜି ଆଜି··· ସତେ କି ସ୍ଥାଣୁ ପାଲଟି ଯାଉଛି ଚନ୍ଦ୍ରଲେଖା···।

"କ'ଣ ଘର ଭିତରକୁ ଯିବାକୁ କହିବ ନାହିଁ । ଅବଶ୍ୟ ତୁମ ଭାଷାରେ ଚରିତ୍ର ହୀନ ଲୋଫର ମୁଁ, ତେବେ ଏ ଲୋଫର ସହିତ ଅନେକ ନିଭୃତ ମୁହୂର୍ତ୍ତର ସମ୍ପର୍କ ତ ତୁମର ଅଛି ।"

"ସମୀର, ତମେ···"

"ତାହେଲେ ମନେ ରଖିଛ ଏ ଅଧମକୁ, ଭାରି ଖୁସିହେଲି ।

"କିନ୍ତୁ ତୁମେ ଏ ଅସମୟରେ"···ଚନ୍ଦ୍ରଲେଖା କଣ୍ଠ ଥରୁଛି···

"ଲୋଫରର ପୁଣି ସମୟ ଅସମୟ ଗୋଟା କ'ଣ ? ବାଁଟ ଗୁଡ଼, ମୁଁ ଟିକେ ଭିତରେ ବସେ…" ଚନ୍ଦ୍ରଲେଖାକୁ ଏକ ପ୍ରକାର ଅବଜ୍ଞା କରି ଘର ଭିତରକୁ ପଶିଗଲା ସମୀର । ଆଜି କିପରି ଅସ୍ୱାଭାବିକ ଆଚରଣ ପ୍ରକାଶ କରୁଛି ସମୀର । କଥାବାର୍ତ୍ତାରେ କିପରି ବେପରୱା ଭାବ । ଆତଙ୍କରେ ଶିହରି ଉଠିଲା ଚନ୍ଦ୍ରଲେଖା । ତେବେ କ'ଣ ଏତେଦିନ ପରେ ପୂର୍ବ ଅନୁରାଗ ଦୋହାଇ ଦେଇ ତା'ଠାରୁ କିଛି ପ୍ରତିଶୋଧ ନେବାକୁ ଆସିଛି ସମୀର । ତାର ସ୍ୱଭାବ ଭଲ ଭାବରେ ଜାଣେ ଚନ୍ଦ୍ରଲେଖା । ଟିକେ ସ୍ନେହ ଦେଇ କଅଁଳ କଥା କହିଲେ ଆଦୌ ଅମାନିଆ ହୁଏନା ସେ । ମାତ୍ର ଯୁକ୍ତି କଲେ, ବିରକ୍ତି ପ୍ରକାଶ କଲେ ସମୀରର ପାଖ ପଶି ହୁଏନା । ତେଣୁ ଏ ପରିସ୍ଥିତିରୁ ରକ୍ଷା ପାଇବାକୁ ହେଲେ ସ୍ୱାମୀ କୋର୍ଟରୁ ଆସିବା ପୂର୍ବରୁ ଅନୁରାଗର ମାୟା ବିସ୍ତାର କରି ତାକୁ ବିଦାୟ କରିବାକୁ ହେବ । ନିଜକୁ ପ୍ରସ୍ତୁତ କଲା ଚନ୍ଦ୍ରଲେଖା । ସମୀରର ଚେୟାର ପଛରେ ଆସି ଛିଡ଼ାହୋଇ ଅତି ଅନୁରାଗ ବୋଳା କଣ୍ଠରେ କହିଲା—

"ଖୁବ୍ ଶୁଖିଲା ଦିଶୁଛ ସମୀର ! ଏ ଭିତରେ ତୁମକୁ ମୁଁ କେତେ ଯେ ଖୋଜୁଛି ! ସତେ କି ଅଜ୍ଞାତ ବାସ କରିଛ ତୁମେ । ସେଦିନ ସାମାନ୍ୟ କଥାରେ ଅଭିମାନ କରି ଚାଲିଗଲ…।"

ଥାଉ ଚନ୍ଦ୍ରା, ସେ ପଛ କଥା ମନେପକେଇ ମୋତେ ଦୁର୍ବଳ କରି ଦେବାକୁ ଯଦି ମନେକରୁ ଥାଅ, ତେବେ ସେ ତୁମର ଭୁଲ ଧାରଣା । ସେ ଦିନର ସମୀର ଆଉ ଆଜିର ସମୀର ମଧ୍ୟରେ ଆକାଶ ପାତାଳର ପ୍ରଭେଦ । ଆଜି ପ୍ରତିଶୋଧ ନେବାକୁ ମୁଁ ଖାଲି ବଞ୍ଚିରହିଛି…"

"ତୁମର ଯାହା ଇଚ୍ଛା ତାହା କର ସମୀର, ମୁଁ ଆଦୌ ସେଥିରେ ବାଧା ଦେବି ନାହିଁ । ତୁମ ମନରେ ଦୁଃଖ ଦେଇ ମୁଁ ଯେଉଁ ପାପ କରିଛି, ତାହାରି ଦହନ ଜ୍ୱାଳାରେ ଆଜି ବି ଜଳୁଛି । ବିଶ୍ୱାସ କର ସମୀର, ଏ ପ୍ରାଚୁର୍ଯ୍ୟ ଭିତରେ ବି ଗୋଟିଏ ମୁହୂର୍ତ୍ତ ତୁମକୁ ମୁଁ ଭୁଲି ପାରିନି…" ଆର୍ଦ୍ରୀଭୂତା ଚନ୍ଦ୍ରଲେଖା କଣ୍ଠରେ ।

"ବାସ୍-ବାସ୍ ଥାଉ ଚନ୍ଦ୍ରା ଥାଉ, ଯଥେଷ୍ଟ ହୋଇଛି । ଆଉ କୌଣସି ଅଭିନୟରେ ଭୁଲିବା ଲୋକ ମୁଁ ନୁହେଁ । ଆଜି ଆସିଛି

ଯେତେବେଳେ ଚନ୍ଦ୍ରବଦନର ସବୁ ହିସାବ୍ ନିକାଶ କରି ଫେରିବ ।" ସମୀରର କଣ୍ଠସ୍ୱର ଖୁବ୍ କର୍କଶ ।

"ମୋତେ ବିଶ୍ୱାସ କର"—ସତେ କି କାନ୍ଦି ପକେଇବ ଚନ୍ଦ୍ରା । "ସେ ଦିକକନ୍ନ ଦିନର ତୁମର ସ୍ନେହ, ଶ୍ରଦ୍ଧା, ଆନ୍ତରିକତାକୁ ମୁଁ ଆଦୌ ଭୁଲି ପାରିନି ସମୀର । ତୁମର ବୋଉ···ସତରେ ସମୀର, ବୋଉ ତୁମର କିପରି ଅଛନ୍ତି···"

"ମରିଗଲା—ଶେଷ ପର୍ଯ୍ୟନ୍ତ ସେହି ଧାରଣା ନେଇ ମଲା ଯେ ତୁମେ ତାର ବୋହୂ ହେଉଛ । ସେଦିନ ତୁମ ବେକରେ ଆମ ବଂଶର ସ୍ମାରକୀ ସେ ଚେନ୍‌ଟା ଲମ୍ବାଇ ଦେଇ ବୋଉ କ'ଣ କହିଥିଲା ତୁମର ମନେଅଛି ତ ଚନ୍ଦ୍ରା···" କମିତି ଅନ୍ୟ ମନସ୍କ ହୋଇ ପଡ଼ିଲା ସମୀର ।

"ମାନେ—ମୁଁ···"

"ହଁ—ବୋଉ କହିଲା ଏ ବଂଶର ବୋହୂମାନେ ହିଁ ଏ ଚେନ୍ ପିନ୍ଧନ୍ତି । ଯିଏ ବୋହୂ ହୋଇପାରନ୍ତି ନାହିଁ ସେମାନେ ଚେନ୍ ଫେରେଇ ଦିଅନ୍ତି । ତମେ ତ ସେ ଚେନ୍‌କୁ ମୁଁ ଶୁଣିଛି ନୂଆକରି ଗଢ଼େଇ ପିନ୍ଧିଛ । ବିଚାରୀ ବୋଉ କମିତି ଜାଣିବ ଯେ ତମେ ଅନ୍ୟର ବୋହୂ ସାଜି ସାରିଲଣି ବୋଲି··· ।

"ମୋତେ କ୍ଷମା କର, ସମୀର··· !

"କ୍ଷମା ଆଉ ଦୟାର ପ୍ରଶ୍ନ ଏଠି ଆଦୌ ଉଠୁନି । ଅନେକ ଥର ମୋର ସମସ୍ତ ନୀତି ନିୟମକୁ ବେଖାତିର କରି ମୋ ସାଙ୍ଗତ ଗ୍ରକିଯାପନ କରିଛ । ଆଜି ସେ ପୂର୍ବ ସ୍ମୃତି ମୁଁ ମନେପକାଇ ଦେବାକୁ ଆସିଛି · "

"ସମୀର ! ଯିଏ ସାଧାରଣ ଶିଷ୍ଟାଗ୍ୱର, ଶାଳୀନତା ଭୁଲି କଥାବାର୍ତ୍ତା କରେ ତାକୁ ମୁଁ ଘୃଣା କରେ—ଯାଅ—ବାହାର ଯାଅ—"

"ଯଦି ନ ଯାଏ···" ଅବିଚଳିତ ସମୀର···

"ତା ନ ହେଲେ ମୁଁ ପୋଲିସ ଡାକିବି, ପାଟିକରି ଲୋକଙ୍କୁ ଡାକିବି···" ଖୁବ୍ ରାଗିଯାଇଛି ଚନ୍ଦ୍ରଲେଖା ।

"ସେଥିରେ ତୁମର କିଁ କ୍ଷତି ହେବ ଚନ୍ଦ୍ରା, ମୋର କଷ୍ଟ ହେବନି । ହେଇ ଦେଖ, ମୋ ହାତରେ ତୁମର ପୂର୍ବ ସ୍ମୃତିର ସ୍ମାରକୀ ତୁମରି ହାତଲେଖା ଚିଠିଗୁଡ଼ିକ । ଆଜି ଏସବୁ ମୁଁ ଆଣିଛି ତୁମ ସ୍ୱାମୀଙ୍କୁ ଦେଖାଇବି ।"

"ମାନେ···" ସତେକି ଆକାଶରୁ ଖସିପଡ଼ିଲା ଚନ୍ଦ୍ରଲେଖା । କ'ଣ କହୁଛି ସମୀର । ସେ ଚିଠିଗୁଡ଼ିକ ଯଦି ତାର ସ୍ୱାମୀ ଦେଖନ୍ତି···ନା—ନା··· ଯିମିତି ହେଉ ସମୀରଠାରୁ ଏ ଚିଠିଗୁଡ଼ିକ ନେଇଯିବାକୁ ପଡ଼ିବ ।

"ସମୀର ମୋତେ ବୁଝିବାକୁ ଚେଷ୍ଟା କର, ତୁମକୁ ମୋ ରାଣ । ମୁଁ ତୁମ ପାଦ ଧରୁଛି, ତୁମର ଯାହା ଇଚ୍ଛା ତାହା କର, ତୁମର କୌଣସି କାର୍ଯ୍ୟକୁ ମୁଁ ବାଧା ଦେବି ନାହିଁ, ହେଲେ ସେ ଚିଠିଗୁଡ଼ିକ ନଷ୍ଟ କରିଦିଅ । ଆମ ସୁନା ସଂସାରକୁ ନଷ୍ଟ କରି ଦିଅନି···" ଅନୁନୟ ଚନ୍ଦ୍ରଲେଖା କଣ୍ଠରେ ।

"ତେବେ ତମେ ଭାବୁଛ ମୁଁ ଏହିପରି ଭଗା ବଣ୍ଡ ହୋଇ ବୁଲୁଥିବି, ଦୁବ ବରକୋଳପତ୍ର ମୋ ଉପରେ ପଡ଼ିବ ନାହିଁ ।"

"ଏ ମା—ଲୋକଟା ଆଜିକାଲି କେତେ ଅଭଦ୍ର ହୋଇ ଗଲାଣି ମ", ମନେ ମନେ ବିରକ୍ତ ହେଲା ସେ । ମୋ ସୁନାଟା ପରା, ଏପରି ପାଗଳଙ୍କ ପରି ହୁଅନା । ତମେ ଗୃହୀଁଲେ ତୁମକୁ କ'ଣ ଝିଅ ଅଭାବ ହେବେ ?"

"ସେ ବୟସ ଆଉ କ'ଣ ମୋର ଅଛି ଚନ୍ଦ୍ରା । ଛାଡ଼ ସେ କଥା, ଏ ଖରାଟାରେ ଆସିଛି । କ'ଣ ଟିକେ ସରବତ୍ ପିଇବାକୁ ଦେବନି ! ଖୁବ୍ ଶୋଷ ହେଉଛି···"

"ଆଣୁଛି···' ଫ୍ରିଜ୍ ଖୋଲି 'ନୋଭା' ଆଣି ଅତି ଆନ୍ତରିକତାର ସହିତ ସମୀର ମୁହଁରେ ଲଗେଇ ଦେଲା ଚନ୍ଦ୍ରା । ସମୀର ଦେହରେ ସଂପୂର୍ଣ୍ଣ ଅଜାଡ଼ି ହୋଇ ବସିବାକୁ ଯିବାବେଳେ ସମୀର ଘୁଞ୍ଚିଗଲା ।

ଯେତେ ଯାହା କଲେ ବି ଏ ଚିଠି ଗୁଡ଼ିକ କିନ୍ତୁ ମୁଁ ନଷ୍ଟକରି ପାରିବିନି ଚନ୍ଦ୍ରା । ପଛ ଜୀବନର ଏସବୁ ମୋର ମଧୁର ସ୍ମୃତି, ଅଳସ ମୁହୂର୍ତ୍ତର ସରସ ଉପାଦାନ ।

"ମୋ ରାଣ ସମୀର, ପ୍ଲିଜ୍···' ଚନ୍ଦ୍ରା ଆଖିରେ ଲୁହ ।

"କେଣ୍, ନିଅ ! ସବୁ ଯୋଉଠିକେଲେ ଯାଇଛି । ଏ ମୃତ କାଗଜ କେତେଖଣ୍ଡ ତା କାହିଁକି ରଖିବ । ହେଇ ଦେଖ ! ତୁମର ଆଗରେ ନିଆଁ ଲଗେଇ ପୋଡ଼ି ଦେଉଛି ।" ସତକୁ ସତ ନିଆଁଠାର ଲଗାଇ ଚିଠିଗୁଡ଼ିକୁ ପୋଡ଼ିଲା ବସି ସମୀର । ଚନ୍ଦ୍ରଲେଖା ଗୁହିଁଥିଲା, ଚିଠିଗୁଡ଼ିକ ତାର ଆଖି ଆଗରେ ପୋଡ଼ି ଯାଉଥିଲା । ନିଆଁ ଧାସରେ ହେଉ ବା ଅନ୍ୟ କୌଣସି କାରଣରୁ ହେଉ ସମୀର ଆଖିରୁ ଲୁହ କେଇଟୋପା ଝରି ପଡ଼ୁଥିଲା ।

"ଏଥର ଆଉ ତୁମକୁ ଉପହାର ଦେବାକୁ ମୋ ପାଖରେ କିଛି ନାହିଁ ଚନ୍ଦ୍ରା । ଅତୀତ ଜୀବନର ଏ ଭସ୍ମସ୍ତୂପରୁ ମୁଠା ମୁଠା ଆଣି ତୁମେ ମୋ ମୁହଁରେ କଳାବୋଳି ଉଚ୍ଚ ସ୍ୱରରେ କହିପାର—ମୁଁ ଶଠ, ଚରିତ୍ରହୀନ, ଲୋଫର, ହା—ହା... ।" ହସୁ ହସୁ କିପରି ବିକଳ ଭାବରେ କାନ୍ଦି ଉଠିଲା ସମୀର ।

"ଏ—ଏତେ ପାଟିରେ ହସନି । ତଳଘରେ ଶାଶୀ ମା ଅଛି—ଗୁକର ପୁଷ୍ପାଶୀ ଅଛନ୍ତି..."

"ବାଃ—ତେବେ ହସିବାକୁ ହେଲେ ବି ତୁମର ବଡ଼ଲୋକ ଆବହାଓ୍ୱା ଭିତରେ ନୂଆ ପଦ୍ଧତିରେ ହସିବାକୁ ହେବ, ଏ କଥା ମୁଁ ଜାଣି ନଥିଲି । ଚୂପ୍ ହୋଇ ବସିଲି ତେବେ..."

"ବସିଲ ମାନେ, ଗ୍ରରଟା ବାଜିଲାଣି । ବର୍ତ୍ତମାନ ସେ କଚେରୀରୁ ଫେରିବେ । ତୁମକୁ ଏଠି ଦେଖିଲେ କ'ଣ ଭାବିବେ ! ଯାଅ, ଏଠୁ ଗ୍ଲଲଯାଅ..." ଅନୁନୟ ତା କଣ୍ଠରେ ।

ବାଃରେ, ଏତେଦିନ ପରେ ଆସିଛି, ତୁମ ସ୍ୱାମୀଙ୍କୁ ନ ଦେଖି ମୁଁ ଫେରିବି କିପରି ? ନିର୍ଲିପ୍ତ ସମୀରର କଣ୍ଠସ୍ୱର ।

"ଏ ମା । କ'ଣ କହୁଛ ତୁମେ । ମୋଗଣ, ମୋ ସୁନାଟା ପରା । ଯାହାଯିବାର ତ ଯାଇଛି । ତୁମେ ମୋ ସୁନା ସଂସାରକୁ ଆଉ ନଷ୍ଟ କର ନାଅନା । ଯାଅ, t leage..."

ତୁମେ ମୋ କଥା ଭଲ ଭାବରେ ଜାଣ ଚନ୍ଦ୍ରା । ମୁଁ ଥରେ ଯାହା କହେ ତାହା ନ କରିବା ପର୍ଯ୍ୟନ୍ତ ସେଥିରୁ ବିରତ ହୁଏନା । ତୁମ ସ୍ୱାମୀଙ୍କୁ ଦେଖା ନକରି ମୁଁ ଯାଇପାରିବ ନାହିଁ ।

"ତୁମକୁ ବନ୍ଧୁ ହିସାବରେ ଅନୁରୋଧ କରୁଛି, ଚାଲିଯାଅ । ନ ହେଲେ ପୋଲିସ ଡାକିବି···

ପୋଲିସ ଡାକିବ, ଡାକ ତେବେ । ତେବେ ପୋଲିସକୁ ମୋର କି ପରିଚୟ ଦେବ । ପୂର୍ବ ପ୍ରେମିକ, ଲୋଫର, ଚୋର; ଡାକ ଡାକ ପୋଲିସକୁ··· ।

ଆତଙ୍କ ପଶିଲା ଚନ୍ଦ୍ରଲେଖା ପ୍ରାଣରେ । ଆଉ ଟିକିଏ ଗଲେ ସ୍ୱାମୀ ଆସିବେ । ଆଉ ଏ ପୋଡ଼ାମୁହାଁ ଆଜି ଆସି ନୂଆ ଅଭିନୟ ଆରମ୍ଭ କଲାଣି । ଏ ମା ମଲି ତ, ତଳେ ଗାଡ଼ି ହର୍ଣ୍ଣ ଶୁଭୁଛି । ଝରକା ଦେଇ ତଳକୁ ଚାହିଁଲା ଚନ୍ଦ୍ରଲେଖା । ସ୍ୱାମୀ ପ୍ରକାଶ ଗାଡ଼ି ଲକ୍ କରି ଖୁବ୍ ତରତରରେ ଉପରକୁ ଉଠି ଆସୁଛନ୍ତି ।

"ଶୁଣ ! ସେ ଆସିଲେଣି, ମୋତେ ରକ୍ଷାକର । ସତେକି କାନ୍ଦି ପକେଇବ ଚନ୍ଦ୍ରଲେଖା ।"

"ଓଃ, ଭୟ କରିବାର କିଛି ନାହିଁ । ତୁମର ଯେତେବେଳେ ଏତେ ଭୟ ତେବେ ମୁଁ ଏ ଆଲ୍‌ମାରି ପଛରେ ଲୁଚିଯାଉଛି । ତୁମ ସ୍ୱାମୀ କୁଆଡ଼େ ଚାଲିଗଲେ ବାହାରି ପଳେଇବି ।" ସତକୁ ସତ ଆଲ୍‌ମିରା ପଛରେ ଯାଇଁ ଲୁଚିଲା ସମୀର । ନିଜକୁ ଯଥାସମ୍ଭବ ସଂଯତ କରି ଖଣ୍ଡେ ବହି ଧରି ପଢ଼ିବାର ଅଭିନୟ କଲା ଚନ୍ଦ୍ରଲେଖା । ତରତର ହୋଇ ଘରକୁ ପଶିଲା ପ୍ରକାଶ । ଯେପରି କିଛି ଭୁଲ କରି ପକେଇଛି ସେ ।

ଆରେ ଶୁଣୁଚ ଲେଖା । କୁନି ଆଜି ସକାଳେ ପୁରୀ ଏକ୍‌ସପ୍ରେସରେ ଆସି ପହଞ୍ଚିବ ବୋଲି ଚିଠି ଲେଖିଥିଲା । ମୁଁ ଭୁଲ୍‌ରେ ଚିଠିଟାକୁ ଫାଇଲ୍‌ରେ ରଖି ଦେଇଥିଲି । ବିଚାରି ସକାଳୁ ଆସି ଷ୍ଟେସନରେ ମୋତେ ନପାଇ କ'ଣ ଭାବିଥିବ କହିଲ ।

"ବା ବା, କୁନି ପାଇଁ ତ ଭାରି ଦରଦ···" ଚନ୍ଦ୍ରଲେଖା ମୁହଁରେ ଦୁଷ୍ଟାମୀର ହସ ।

"ଆରେ ତୁମେ ହସୁଚ କ'ଣ ? ତାର ଦାନକୁ କ'ଣ କିଏ ଭୁଲିପାରେ ? ତମେ ତ ଜାଣ ତା'ର ବାପାଙ୍କ ଦୟାରେ ମୁଁ ଏତେ ପାଠ ପଢ଼ିପାରିଲି···।"

"ଆଉ ତାଙ୍କ ଝିଅକୁ ବିବାହ କରିବାର ସମସ୍ତ ପ୍ରତିଶ୍ରୁତି ବି ଦେଇଥିଲି । ହେଲେ ବସନ୍ତରେ ବିଶ୍ରୀଙ୍କର ମୁହଁଟା ବିକୃତ ହୋଇଯିବାରୁ ସିଏ ଫେରିକି ଆସି ଅନ୍ୟର ହାତ ଧରିଲେ । ଧନ୍ୟ ତୁମ ପୁରୁଷ ଜାତି···।"

"ସେଇ ଦୁଃଖରେ ମଉସା ମରିଗଲେ, ଆଉ କୁନି ମୋତେ ଦୋଷ ଦେବ କ'ଣ, ମୋ ନାଁରେ ତାଙ୍କ ସମ୍ପତ୍ତିରୁ ଅଧେ ଉଇଲ୍ କରିଦେଲେ···।"

"ଏଇଠି ନାରୀ ପୁରୁଷ ମଧ୍ୟରେ ପାର୍ଥକ୍ୟ । ପୁରୁଷ ଯେତେ ହତାଦର କଲେ ବି ନାରୀ ତା ଭଲ ପାଇବାରେ ଅଟଳ ଥାଏ···।"

"ଉଃ, ଏ ଆଲ୍‌ମିରା ସନ୍ଧିରେ ପ୍ରବଳ ପିମ୍ପୁଡ଼ି । ବେଶୀ ସମୟ ଲୁଚି ରହିହେଲା ନାହିଁ । ଉଃ ଗୋଡ଼ ଦୁଇଟା ଏକ ପ୍ରକାର ଫୁଲି ଉଠିଲାଣି ।" ଆଲ୍‌ମିରା କଡ଼ରୁ ବାହାରି ଆସୁ ଆସୁ କହିଲା ସମୀର । ଚନ୍ଦ୍ରଲେଖା ମୁହଁରୁ ଯେତିକି ସବୁ ରକ୍ତ କିଏ ଶୋଷି ନେଇଗଲା । ଆଉ ପ୍ରକାଶ, ବିସ୍ମୟ ବିସ୍ଫାରିତ ଭାବରେ ଚାହିଁରହିଲା ଏହି ଅଦ୍‌ଭୁତ ଆଗନ୍ତୁକକୁ ।

"କିଏ ତୁମେ···ଏଠି କଣ କରୁଥିଲ ।" କର୍କଶ ସ୍ୱର ପ୍ରକାଶର ।

"ଚନ୍ଦ୍ରାକୁ ପଚାର ମୁଁ କିଏ ?" ନିର୍ଲିପ୍ତ ଉତ୍ତର ସମୀରର ।"

"ଏ, ପର ସ୍ତ୍ରୀର ନାଁ ଧରି ଏପରି କଥାବାର୍ତ୍ତା କରାଯାଏ ନାହିଁ । କଥାବାର୍ତ୍ତା କରିବାର ସାଧାରଣ ଶିଷ୍ଟାଚାର ଶିଖିବା ଉଚିତ ।"

"କ'ଣ କରିବା ଓକିଲ ସାହେବ ! ପିଲାବେଳୁ ସେ ଶିକ୍ଷା ମୋର ନାହିଁ । ଯାହା ନୋହିଛି ବାଳ କାଳେ ତାହା ହେବ କି ଏ ବୁଢ଼ାବେଳେ···" ଚେୟାର ଟାଣିନେଇ ବସିଲା ସମୀର ।

"ଆରେ ତମେ ବସିଲ ଯେ । ବାହାର ବାହାର ଏଠୁ । ଲେଖା, ଜାଣ ଏ କିଏ ?"

"ନା, ଆଜ ଖରାବେଳେ ଏ ଘରେ ପଶି ମୋତେ ବ୍ଲାକ୍‌ମେଲ୍ କରି କିଛି ପଇସା ମାରିନେବାର ଚକ୍ରାନ୍ତ କରୁଥିଲା । ମୁଁ ଧମକ ଦେବାରୁ, ପୋଲିସ ଡାକିବାକୁ କହିବାରୁ ଅନୁନୟ ବିନୟ କରି ମୋତେ ବାରଣ କଲା । ସେତିକିବେଳେ ତମେ ଆସିଲ । ତମ ଭୟରେ ଆଲ୍‌ମିରା କଡ଼ରେ ଲୁଚିଲା । ଆଉ ଏଇନେ···" ଚନ୍ଦ୍ରଲେଖାର ଅଭିନୟ ଅତି ନିଖୁଣ ।

"ଏ, ବାହାର ବାହାର ଏ ଘରୁ । ନ ହେଲେ ପୋଲିସ ଡାକିବି···"

"ଡାକନ୍ତୁ, ହେଲେ ଏଥିରେ ତୁମର ବଦ୍‌ନାମ ହେବ । ମୁଁ ପୋଲିସକୁ କହିବି, ମୁଁ ଏଠିକି ନିଜ ଇଚ୍ଛାରେ ଆସିନାହିଁ । ତୁମ ସ୍ତ୍ରୀ ଡାକିବାରୁ ଆସିଛି ।" ନିର୍ବିକାର ଉତ୍ତର ସମୀରର ।

"You Scoundrel, I will kill you···" ସମୀର ଆଡ଼କୁ ଉଠିଆସିଲା ପ୍ରକାଶ ।

"ଆସ୍ତେ, ଆସ୍ତେ ପ୍ରକାଶବାବୁ । ମୋର ଏ ମାଂସପେଶୀକୁ ଦେଖୁଛନ୍ତି ତ । ଅଯଥାରେ କାହିଁକି ଦୋହିଏ ହାତଗୋଡ଼ ଜଖମ କରିବେ । ଚୁପ୍ ହୋଇ ବସନ୍ତୁ । ମୋ କାମ ସରିଲେ ମୁଁ ଆପେ ଚାଲିଯିବି ।"

ପ୍ରକାଶ ନିରେଖି ଚାହିଁଲା ସମୀରକୁ । ସତରେ, ସମୀର ଯାହା କହୁଛି ମିଛ ନୁହେଁ । ତଥାପି ସ୍ତ୍ରୀ ଆଗରେ ନିଜର ଭୟ ପ୍ରକାଶ କରିବା ପୌରୁଷତ୍ୱ ନୁହେଁ । ଟିକିଏ ଦୂରେଇ ରହି ହୁଙ୍କାର ଛାଡ଼ିଲା । "ଗୁଣ୍ଡାମୀ, ମୋତେ ଗୁଣ୍ଡାମୀ ଦେଖାଉଛ । କେତେ ଗୁଣ୍ଡାଙ୍କୁ ମୁଁ ଜୀବନରେ ସାବାଡ଼ କରିଛି । ଖ୍ରୀମ ! ଖ୍ରୀମ !" ଚାକର ଖ୍ରୀମ ଉଦ୍ଦେଶ୍ୟରେ ରଡ଼ି ଛାଡ଼ିଲା ପ୍ରକାଶ ।

"କୁଆଡ଼େ ମଲୁ କି ଧରମ ଛଡ଼ା, ଖ୍ରୀମ···" ସ୍ୱାମୀ ସହ ଚନ୍ଦ୍ରଲେଖା ବି ରଡ଼ି ଛାଡ଼ିଲା । ଏ ବିପଦରୁ ସେମାନଙ୍କ ପ୍ରାଣକର୍ତ୍ତା କେବଳ ଖ୍ରୀମ—

"ଏ—ଯାଉନ କାହିଁକି, ଯାଅ—ବାହାର···" ପ୍ରକାଶ ଧମକାଇଲା ।

"ଆଗ ଖ୍ରୀମ ଆସୁ, ଦେଖିବି ଯଦି ଖ୍ରୀମ ଦ୍ୱାରା ପରାସ୍ତ ହୋଇଯିବାର ସମ୍ଭାବନା ଥିବ ତେବେ ଚାଲିଯିବି । ନ ହେଲେ ମୁଁ ଏତେ ସହଜରେ ଏଠୁ ଯାଉନି । ଆଚ୍ଛା କାହାର ଯଦି କିଛି ଆପତ୍ତି ନ ଥାଏ, ତେବେ ସିଗାରେଟ୍ ଖାଇଲି···" ନିଶ୍ଚିନ୍ତରେ ବସି ସିଗାରେଟ୍ ଟାଣିଲା ସମୀର ।

"ତମେ ଯିବ କି ନାହିଁ—Lastly କହୁଛି ଚାଲିଯାଅ···"

"ଥରେ କହିଛି ମୁଁ ଏଠି ଜଣକୁ ଅପେକ୍ଷା କରିଛି, ସେ ଆସିଲେ ମୁଁ ଚାଲିଯିବି" ଅତି ସହଜ ଉତ୍ତର ସମୀରର ।

"ଏଇଟା କ'ଣ Waiting room ଯେ ତମେ ଏଠି କାହାକୁ ଅପେକ୍ଷା କରିବ ?" ପ୍ରକାଶ କଣ୍ଠରେ ବିରକ୍ତି ।

"ନା—Waiting room ଅବଶ୍ୟ ନୁହେଁ । ତେବେ ଆମ ଭଳି ଲୋକଙ୍କ ପାଇଁ ଏଠି ବସିବାର ଅସୁବିଧା କିଛି ନାହିଁ । ଦେଖ ଚନ୍ଦ୍ରା !! ମୋର ଗୋଟାଏ ବଦଭ୍ୟାସ ଯେ ମୁଁ ବେଶୀ ସମୟ ଖାଲି ପେଟରେ ରହି ପାରେନା, କିଛି ଜଳଖିଆର ବ୍ୟବସ୍ଥା କଲେ···"

"ଏ—You rogue, I will finish you. Get out, get out—ଖ୍ରୀମ-ଖ୍ରୀମ······

"Don't shout. ମୁଁ ନିଜେ ନ ଗୃହିଁଲେ ମୋତେ ଏଠାରୁ କେହି ଉଠାଇ ପାରିବେ ନାହିଁ ; ବରଂ ବନ୍ଦୋବସ୍ତ କରନ୍ତୁ, ଜଳଖିଆ ଗୃ ମଗାନ୍ତୁ···

ପ୍ରକାଶ କ'ଣ କପରି କରିବ କିଛି ଭାବିପାରିଲା ନାହିଁ । ସମୀରର ସାମର୍ଥ୍ୟ ପାଖରେ ନିଜକୁ ଖୁବ୍ ସଙ୍କୁଚିତ ମନେ କରୁଥିଲା ସେ, ଅଥଚ କ୍ରମଶଃ ଏ ଗୁଣ୍ଡାଟାର ଔଦ୍ଧତ୍ୟ ସୀମା ଅତିକ୍ରମ କରିଯାଉଛି ।

"ପ୍ରକାଶଭାଇ ! ପ୍ରକାଶଭାଇ" ତଳୁ କୁନିର କଣ୍ଠସ୍ୱର ଏହି ସମୟରେ ଶୁଭିଲା । ପ୍ରକାଶ ବିଚଳିତ ହୋଇ ତଳକୁ ଦୌଡ଼ି ଗୃଲିଗଲା, ଆଉ ଚନ୍ଦ୍ରଲେଖା ବି । ସମୀର କିନ୍ତୁ ନିଶ୍ଚିନ୍ତ ଭାବରେ ସେଇଠି ବସିଥାଏ । କିଛି ସମୟ ପରେ ପୁଣି ଘରକୁ ଜଣ ଜଣ ହୋଇ ତିନିଜଣ ପଶିଲେ । କୁନି କିନ୍ତୁ ଅନର୍ଗଳ ଗପି ଗୃଲିଥାଏ ।

"ଓଃ, ଆଜି ସକାଳୁ ଆସି ମୁଁ ଯେଉଁ ହଇରାଣ ହେଲିଣି । ତୁମକୁ ଚିଠି ଲେଖିଥିଲି, ଭାବିଥିଲି ତୁମେ ନିଶ୍ଚୟ ଷ୍ଟେସନରେ ଥିବ । କିନ୍ତୁ କାହାକୁ ପାଇଲି ନାହିଁ । ସେ ବି ଅନ୍ୟ କାମରେ ଗୃଲିଗଲେ । ତୁମ ଘର ଠିକଣା ମୋତେ ଜଣା ନାହିଁ । ଖରାବେଳ ସାରା Waiting room ରେ ବସି ବସି ଏବେ ଠିକଣା ପାଇ ଆସୁଛି ।"

"ମୁଁ ତୋ ଚିଠି ଆଦୌ ଖୋଲି ନ ଥିଲି କୁନି । କୋର୍ଟରେ ଚିଠି ଦେଖି ତ ଦୌଡ଼ୁଛି । ତୁ କାହା ସାଙ୍ଗରେ ଆସିଲୁ ବାଲେଶ୍ୱରରୁ ।"

"ମୋ ସଙ୍ଗରେ ।"

ନିର୍ଲିପ୍ତ ଉତ୍ତର ସମୀରର···

"ଏ ମା···, ତମେ ଏ ଗୁଣ୍ଡାଟା ସହିତ ଆସିଲ କୁନ ।" ଚନ୍ଦ୍ରଲେଖାର ବିସ୍ମିତ ପ୍ରଶ୍ନ ।

"ଭୁ'ତ ମୋତେ ଲେଖିଥିଲେ ମୁଁ ନିଜେ ଯାଇଁ ତୋତେ ନେଇ ଆସିଥାନ୍ତି" ପ୍ରକାଶର ଅସ୍ମୀୟତାପୂର୍ଣ୍ଣ ପ୍ରଶ୍ନ ।

"ଦେଖିଲ ନାହିଁ ରେଳ ଷ୍ଟେସନରୁ କପରି ଜାକଜମକରେ ସ୍ୱାଗତ କଲେ—" ଟିପ୍ପଣୀ ଦାଣିଲା ସମୀର ।

"ଏ··· ଏ ଆମ ଘରୋଇ କଥାବାର୍ତ୍ତା, ତୁମେ ଏଥିରେ ମୁଣ୍ଡ ପୂରେଇଲେ ଭଲ ହେବନି କହୁଛି ।" ପ୍ରକାଶର କର୍କଶ ସତର୍କବାଣୀ ।

"ଆରେ ବାବୁ ତୁମେ ଏପରି ବିରକ୍ତ ହେଉଛ କାହିଁକି ? ତୁମେ ଏଇ ଟିକକ ଆଗରୁ କହୁଥିଲ ତୁମ ଅଜ୍ଞାତ ଜୀବନର ପ୍ରେମିକାଙ୍କର ମୁହଁଟା ବସନ୍ତରେ ଯଦି ନଷ୍ଟ ହୋଇ ନ ଥାନ୍ତା । ଆଖିଟାଏ ଯଦି ଏପରି ବିକୃତ ହୋଇ ନ ଥାନ୍ତା···"

"ବେଶୀ ବଡ଼ି ବଡ଼ି କଥାବାର୍ତ୍ତା କରୁଛୁ । ଲେଖା ! ଡାକ ତ ଶ୍ୟାମକୁ, ଗଳା ଧକ୍‌କା ଦେଇ ଏଇଟାକୁ ଏଠୁ ବାହାର କରିବାକୁ ପଡ଼ିବ···"

"ଓଃ—ନିଜେ ଯେତେବେଳେ ନ ପାରି ଗୁକରର ସାହାଯ୍ୟ ଲୋଡ଼ିଲଣି, ତେବେ ମୁଁ ଅଗତ୍ୟା ଗୁଲିଯାଉଛି । କୁନ ! ତମେ ଏଇନେ ଯିବ କି ନାହିଁ···" ସମୀର ଯିବାପାଇଁ ଉଠି ଛିଡ଼ା ହେଲା ।

"ପୁଣି Idiotଙ୍କ ଭଳି କର୍ତ୍ତାବାର୍ତ୍ତା କଲ ! ତୁମ ସହିତ ସେ କାହିଁକି ଯିବ···" ପ୍ରକାଶର ବାରଣ ଏ ଭିତରେ ବଢ଼ି ଯାଇଛି ସତେକି ।

"ଏ ମା ତୁମେ ତାହେଲେ ଏପର୍ଯ୍ୟନ୍ତ ତୁମ ପରିଚୟ ଦେଇନା ନା କ'ଣ ? ପ୍ରକାଶଭାଇ, ତୁମେ ଯାହାକୁ ଘୃଣାରେ ଗୁଡ଼ି ଆସିଥିଲ । ମୋ ମୁହଁକୁ ଗୁହିଁଲେ ଆଜ ଲୋକେ ଘୃଣା କରନ୍ତି, ହେଲେ କେଉଁ ଦୁଃଖରେ ଯେ ଏ ମୋତେ ବିବାହ କଲେ···"

"ମାନେ ଏ ଡେବ ତୋ ସ୍ୱାମୀ, I. P. S. Officer, ବାଲେଶ୍ୱରରେ D. S. P ଅଛନ୍ତି..." ପ୍ରକାଶ ସେତକ କହିଲା ପରିଲା...

"ମାନେ...କୁନ...ଏ ତୁମ ସ୍ୱାମୀ..." ଚନ୍ଦ୍ରଲେଖା ପାଟିରୁ ସେତିକ କଥା ବାହାରି ପାରୁନ...

"ହଁ ଚନ୍ଦ୍ରା, ଯାହାକୁ ଯାହା ଖଞ୍ଜିଛନ୍ତି ଦଇବ । ତମେ ଭାବଥିବ ଧନଲୋଭରେ ମୁଁ କୁନିକୁ ବିବାହ କରିଛି । କିନ୍ତୁ ବିବାହର ପରଦିନ କୁନିର ସମସ୍ତ ସମ୍ପତ୍ତି ଏକ ଅନାଥାଶ୍ରମକୁ ଦାନ କରି ଦେଇଛୁ । କୁନିର ଧନ ପାଇଁ ନୁହେଁ ମନ ପାଇଁ ମୁଁ ତାକୁ ବିବାହ କରିଛି । ଅନେକ ସୁନ୍ଦରୀ ଝିଅଙ୍କ ସହ ମୋର ପୂର୍ବ ସମ୍ପର୍କ ଥିଲା । କିନ୍ତୁ ଏ ମନ କାହା ପାଖରେ ନ ଥିଲା । ମୁଁ ଖୁସି, ମୁଁ ଖୁବ୍ ଖୁସି..." ଆଉ କେହି ବୁଝନ୍ତୁ ନ ବୁଝନ୍ତୁ ଚନ୍ଦ୍ରଲେଖା କିନ୍ତୁ ଠିକ୍ ବୁଝିଲା କେଉଁ ବ୍ୟଥାରେ ସମୀର ନିଜକୁ ନିଜେ ହତ୍ୟା କରିଛି । କାହା ଉପରେ ପ୍ରତିଶୋଧ ନେବା ପାଇଁ ସେ ଆଜି ଏ ବିକୃତ ବଦନା କୁନିକୁ ନିଜର ସ୍ତ୍ରୀ ରୂପେ ଗ୍ରହଣ କରିଛି । ବଡ଼ ପାଟିରେ କାନ୍ଦିବାକୁ ମନ ହେଉଥିଲା ଚନ୍ଦ୍ରଲେଖାର । ହେଲେ ସେ ଇଚ୍ଛାକରି କାନ୍ଦି ବି ପାରୁ ନ ଥିଲା । ଓଃ—ପୋଡ଼ାମୁହିଁ ! କ'ଣ କଲୁ ତୁ । ଦେବ କୁମାର ପରି ଚେହେରା ସମୀରର, ଆଉ ତୁ ଛି...ଛି...ଏ ତୁମେ କ'ଣ କଲ ସମୀର ! ଅହେତୁକ ବ୍ୟଥାରେ ଶିହରି ଉଠିଲା ଚନ୍ଦ୍ରଲେଖା । ସମୀର I. P. S. ପାଇଲା । ମୁଁ ନ ହେଲି ନାହିଁ, ମୋଠାରୁ ଅଧିକ ସୁନ୍ଦରୀ ଝିଅମାନଙ୍କର Que ଲାଗିଥାନ୍ତା ସମୀର ପଛରେ । ହେଲେ ସମୀର ? କାହିଁକି ଏ ଅପରୂପା କାଣୀଟାକୁ ବିବାହ କଲା । ମୋ ଉପରେ ଅଭିମାନ କରି କାହିଁକି ନିଜେ ଅସ୍ୱାଭାବିକ ଦହନ ଜ୍ୱାଳାରେ ପଶିଲା...ମୁଣ୍ଡକୋଡ଼ି କାନ୍ଦିବାକୁ ଇଚ୍ଛା ହେଉଥିଲା ତାର, ହେଲେ...

"ତମେ ଯିବ ନା ରହିବ କୁନି, ମୁଁ ଗଲିଲି..." ସମୀର ବାହାରିଲା ଯିବାକୁ ।

"ବାଃ—ତମେ ଯେତେବେଳେ ଗଲିଯାଉଛ, ମୁଁ ରହିବି କାହିଁକି ? ମୁଁ ପୁଣି ପରେ ସମସ୍ତ ଦେଖି ଆସିବି ପ୍ରକାଶଭାଇ । ଭାଉଜ ତମେ ତ ସବୁ ଜାଣ । କେଡ଼େ ଏକଜିଦିଆ ମଣିଷ ସେ, ଯାହା ବୁଝିଥିବେ ସେଇଆ । କିଛି ଭାବିବ ନାହିଁ, ଆମେ ଆସୁଛୁ ।"

ସଙ୍ଗେ ସଙ୍ଗେ ଚନ୍ଦ୍ରଲେଖା ଅନ୍ତରରେ ଏକ ଆକସ୍ମିକ ବିସ୍ଫୋରଣ ହେଲା । କ'ଣ କହୁଛି ଏ କୁନା, "ତମେ ତ ସବୁ ଜାଣ"·ତା ମାନେ, ତା ଜୀବନର ସବୁ ଇତିହାସ ତାହେଲେ ସମୀର କୁନାକୁ କହିଦେଇଛି । ଛି—କି ଲଜ୍ୟାର କଥା । କୁନା ଯଦି ସବୁକଥା ତା ସ୍ୱାମୀ ଆଗରେ କହିଦିଏ ? ଆଜି ସମୀର ତ ଆଉ ଭାଗାବଣ୍ଡ ନୁହେଁ । ସମାଜର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ।

ମୁଁ ତେବେ ଆସୁଛି ପ୍ରକାଶବାବୁ, ଆସୁଛି ଚନ୍ଦ୍ରାଦେବୀ କେତେ ସମୟ ପାଇଁ ଆସି Trouble ଦେଲି, କ୍ଷମା କରିବ । Bye···ଲମ୍ବା ପାଦ ପକେଇ ସମୀର ଧିରେ ବାହାରି ଯିବାକୁ ଲାଗିଲା ।

"ନା—ନା—ଏ କପରି ହେବ, ମୁଁ ଅଜାଣତରେ ଯାହା ଭୁଲ କରି ପକେଇଛି ସମୀରବାବୁ, ସେଥିପାଇଁ କ୍ଷମା କରିବେ । ଆପଣ ଏପରି ଯାଇପାରିବେ ନାହିଁ ।" ପ୍ରକାଶ କଣ୍ଠରେ ଅନୁନୟ ।

"ଆପଣ ଏପରି ଗୁଲିଗଲେ ଆମେ ଖୁବ୍ ଦୁଃଖିତ ହେବୁ ସମୀରବାବୁ ।" ନିଜକୁ ଯଥା ସମ୍ଭବ ସଂଯତ କରି ଏତିକି କହିଲା ଚନ୍ଦ୍ରଲେଖା ।

"ଆପଣ ପେଗୁ ଦେଖିଛନ୍ତି ଚନ୍ଦ୍ରାଦେବୀ, ଦିନର ଆଲୋକରେ ବଗୁଲି ଲୋକଲୋଚନ ଅନ୍ତରାଳରେ ଗଛ କୋରଡ଼ରେ ଲୁଚି ରହେ ମାତ୍ର ରାତିର ନିସ୍ତବ୍ଧ ପ୍ରହରରେ ଶିକାର ଖୋଜି ଶିକାରକୁ କ୍ଷତାକ୍ତ କରେ, ରକ୍ତ ରଞ୍ଜିତ କରେ । ସେହିଭଳି ଆମେ ସମସ୍ତେ ଗୋଟିଏ ଗୋଟିଏ ପେଗୁ । ଲୋକଙ୍କ ଆଖିରେ ସରଳ, ଶାନ୍ତ । ଗଛ କୋରଡ଼ରେ ଲୁଚିରହୁ, ଆଉ ଠିକେ ଅନ୍ତରାଳକୁ ଗଲେ ସ୍ୱାର୍ଥଚଞ୍ଚୁରେ ସମସ୍ତଙ୍କୁ କ୍ଷତାକ୍ତ କରୁ । କାମୁଡ଼ି ବିଦାରି ରକ୍ତରଞ୍ଜିତ କରୁ, Bye ଆସ କୁନା···"

ଅତି ଦ୍ରୁତ ଗତିରେ ଘରୁ ଗୋଡ଼ କାଢ଼ି ଗୁଲିଗଲା ସମୀର, ପଛେ ପଛେ କୁନା ବି ବାହାରିଗଲା । ପ୍ରକାଶ ଧାଇଁଲା ପଛେ ପଛେ ।

"ସମୀରବାବୁ—ସମୀରବାବୁ—"ପ୍ରକାଶ ଅନୁନୟ କଣ୍ଠରେ ଡାକି ଡାକି ଗୁଲିଲା ସମୀର ପଛରେ ।•

"ମୁଁ ଯାଉଛନ୍ତି ଭାଉଜ, ତାଙ୍କୁ ଛାଡ଼ି ମୁଁ ତ ବାହାରେ ରହିପାରିବ ନାହିଁ । ବଡ଼ ଭୋଳା ଲୋକ ସେ, ପାଖରେ ଜଗି ଖାଇବାକୁ ନ ଦେଲେ ଖାଇବା କଥା ବି ଭୁଲିଯାଆନ୍ତି ସମସ୍ତେ ସମସ୍ତେ—ଯାଉଛନ୍ତି ।" କୁନି ବି ତରତରରେ ତଳକୁ ଚାଲିଗଲା ।

ହେଲେ ଚନ୍ଦ୍ରଲେଖା, କୌଣସି ବାଧାବନ୍ଧନ ନ ମାନି ତା ଦୁଇ ଆଖିରୁ ଲୁହ ଝରି ପଡ଼ୁଥିଲା । ସବୁ କପଟ ଝାପ୍‌ସା ଝାପ୍‌ସା ଦେଖାଯାଉଥିଲା । "ଓଃ—ଯୋଉ ତ ସ୍ତ୍ରୀ—ସ୍ୱାମୀ ସୋହାଗ ଦେଖାଉଛନ୍ତି ।" କୁନି ପ୍ରତି ତାର ଖୁବ୍ ହିଂସା ହେଉଥିଲା । ଆଜ ସେ ଭାବୁଥିଲା ସତେ କି ତା ଛାତିର କଲିଜାକୁ ଏଇ ପୋଡ଼ାମୁହାଁ କାଟି ପକାଉଛି । ଓଃ—ସମୀର, ତମେ କ'ଣ କଲ ସମୀର । ଏ କୁହ୍ନି ତା ବସନ୍ତମୁହାଁ କାଣୀକୁ ଶେଷରେ ତୁମେ ବିବାହ କଲ । ମୁଁ ତମର ସତେ କି କ୍ଷତିକଲି ସମୀର ! ଚନ୍ଦ୍ରଲେଖାର ମନେ ହେଉଥିଲା ମୁଣ୍ଡପିଟି କାନ୍ଦିବାକୁ । ଓଃ—ହମୀର···

ପାଖ ଘରୁ କିଏ ପୋଡ଼ାମୁହାଁ ଏତିକିବେଳେ ଖୁବ୍ ଜୋରରେ ରେଡ଼ିଓ ଖୋଲି ଦେଲା, ଆଉ ପୋଡ଼ା ମୁହାଁ କିଏ ଏତିକି ବେଳକୁ କଣ୍ଠ ଥରେଇ ଗାଇ ମରୁଛି—"ମାୟାବିନୀ ରାତି ଗୋ ତୁମ ମାୟାରେ ଆଉ ଜଳାନା"···

ଯାଃ—ଛିକ୍, ତକିଆରେ ମୁହଁଜାକି କଇଁ କଇଁ ହୋଇ କାନ୍ଦିଉଠିଲା ଚନ୍ଦ୍ରଲେଖା ।



# କହିଲେ କୁଳ କୁଟୁମ୍ବଙ୍କୁ ଲାଜ

ଠାକୁର ବିଶ୍ୱାସ ଆଦୌ ନାହିଁ ବୋଲି ବାହାରକୁ ଯେତେ ଡିଣ୍ଡିବ ପିଟିଲେ ବି ଭିତରେ ଭିତରେ କିନ୍ତୁ ଜୟଦେବ ଭୟଙ୍କର ଧର୍ମଭୀରୁ । ଭୀଷଣ ଧର୍ମ ବିଶ୍ୱାସୀ । ଅନ୍ଧାର ହେଲେ ଏକୁଟିଆ ସ୍ଥାନରେ ଖଣ୍ଡେ ପଥରକୁ ବି ମନେ ମନେ ଦଶଥର ମୁଣ୍ଡିଆମାରେ ସେ । ଭୂତପ୍ରେତର ଅବସ୍ଥିତିକୁ ମାନେ ନାହିଁ ବୋଲି ଲୋକଙ୍କ ଆଗରେ ଖୁବ୍‌ଗୋଟା ବାହାସ୍ଫୋଟ ମାରିଲେ ବି ରାତିରେ ଏକୁଟିଆ କୋଉଠି ଆସୁଥିଲେ ଠାକୁର ଠାକୁରାଣୀଙ୍କୁ ଡାକି ଡାକି ବିଚରା ନସ୍ୟାନ୍ତ ହୋଇଯାଏ । ତେବେ, ନିଜର ଏ ଭୟାଳୁ ଭାବକୁ କାହାରି ଆଗରେ ପ୍ରକାଶ କରେ ନାହିଁ ବରଂ ଏସବୁ ବିରୁଦ୍ଧରେ ଭାଷଣ ଦେଇ ଜଣେ ବୀର ଭାବରେ ବେଶ୍ ଆମୋଦ ଅନୁଭବ କରେ ସେ । କାରଣ ଗୁରୁଙ୍କ କଥାକୁ ବେଶ୍ ଅକ୍ଷରେ ଅକ୍ଷରେ ପାଳନ କରନ୍ତି ସେ । ଯାହା କହୁଛି କର, ଯାହା କରୁଛି କର ନାହିଁ । ନିଜେ ସିନା ଭୂତପ୍ରେତ ଠାକୁର ଠାକୁରାଣୀଙ୍କୁ ମନକୁ ମନ ଡରୁଛି ହେଲେ ଭାଷାରେ ଏ ସବୁକୁ କୁସଂସ୍କାର, ବାଜେ ଧାରଣା ବୋଲି କହି ଉଡ଼େଇ ଦେଉଛି ।

ଆଜି ବିଚରାର କପାଳ ରାତି ପାହିଥିଲା କେଜାଣି ଆସିଲାବେଳେ ବିଚରା କୌଣସି ଠାକୁର ଠାକୁରାଣୀଙ୍କୁ ଡାକି ବୋଧେ ଅନୁକୂଳ କରି ନଥିଲା । ତା ନହେଲେ ବିଚରା କ୍ୟାପିଟାଲ ବସ୍‌ଷ୍ଟାଣ୍ଡରେ ପଶୁ ନ ପଶୁଣୁ ଏ ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହୋଇ ନଥାନ୍ତା । କପାଳ ଅନ୍ୟମନସ୍କ ଭାବରେ ଚପଲ ଘୋଷାରି ଘୋଷାରି ମେନ୍‌ଗେଟ୍ ଦେଇ ବସ୍‌ଷ୍ଟାଣ୍ଡ ଭିତରକୁ ପଶୁଥିଲା ଜୟଦେବ । ପୁଅ ଝିଅଙ୍କର ମିଶ୍ରିତ ଉଚ୍ଚ ହାସ୍ୟରୋଳରେ ତାର ଅନ୍ୟମନସ୍କତା ଭାଙ୍ଗିଗଲା । କାହିଁ ? କେବଳ ତ ପୁଅ ପିଲାଗୁଡ଼ା ଛୁଆ

ହୋଇଛନ୍ତି । ପୁଅ ଝିଅଙ୍କର ମିଶାମିଶି ହସ ଆସୁଛି କୁଆଡ଼ୁ ? ବୋକାଙ୍କ ଭଳି ଜୟଦେବ ଗୁହିଁଲି ଏଣେ ତେଣେ ।

"ଓ ଗୁରୁଦେବ ! Come here ? ଆରେ ଆଓନା" ସେ ଦଳଙ୍କ ଭିତରୁ ଜଣେ ଡାକ ଗୁଡ଼ିଲା । ଦେହରେ ଛୁଟ ଶାର୍ଟ, ପଛକୁ ଝିଅପିଲାଙ୍କ ଭଳି ବାଳ ଓହଳିଛି । ଅଖିମଳ ଖୁବ୍ ଗୋଟା ଗନ୍ଧରିଆ ଗୁହିଁଲା ଜୟଦେବ । ଝିଅ ପିଲାନା ପୁଅ ପିଲା । କଣ୍ଠ ପୁଅଙ୍କ ଭଳି ଶୁଭୁଛି..."

"ଆରେ ବରବ୍, ନିହାତି ମଫସଲ ଚୂଡ଼ା ତ ।" କମିତି Idiotଙ୍କ ଭଳି ଗୁହିଁଛି ଦେଖ..." ସତେ କି ପୁରାପୁରି ବୋକା ପାଲଟିଯାଉଛି ଜୟଦେବ । ଏ ଜଣୁସ୍ୱର ଗୋଟିଏ ଝିଅପିଲାର ହେଲେ ତା ଦେହରେ ବେଶ୍ ପୋଷାକ ସମ୍ପୂର୍ଣ୍ଣ ପୁଅପିଲାର । କଳା ବେଲବଟମ୍ ନା କ'ଣ ପ୍ୟାଣ୍ଟ ସାଙ୍ଗକୁ ଧଳା ପଞ୍ଜାବୀ । ପାଖକୁ ଗଲେ ଅବଶ୍ୟ ଶରୀର ଗଠନହିଁଗରୁ ଝିଅପିଲା ବୋଲି ଜାଣିହେବ ନ ହେଲେ ଦୂରରୁ ଝିଅଗୁଡ଼ିକୁ ପୁଅ ଆଉ ପୁଅଗୁଡ଼ିକୁ ଝିଅ ବୋଲି ସେ ନେହ୍ୱ କହିବେ ।

ହେଲେ ବଡଜ ଚିଡ଼ିଆଖାନାର ସଦ୍ୟ ଧରାହୋଇଥିବା ବଣ୍ୟ ଓରାଙ୍ଗଟାଙ୍ଗମାନେ ସକାଳୁ ସକାଳୁ ବରବ୍ ଜୟଦେବ ଉପରେ ଆଖି ପକେଇଲେ କାହିଁକି ? ଖୁବ୍ ସତର୍କତାର ସହିତ ନିଜ ପକେଟରେ ହାତମାରି ଦେଖିଲା ଜୟଦେବ । ନା, ପକେଟରେ ବିଶେଷ ପଇସା ନାହିଁ । ନ ହେଲେ ଏ ଜନ୍ତୁଗୁଡ଼ିକ ଜବରଦସ୍ତ ଜଳଖିଆ ଖାଇ ନେଇପାରନ୍ତି ବା କୌଣସି Cuttural Programme ନାମରେ ଅଯଥା ଟିକେଟ୍ ବିକ୍ରି କରିବାପାଇଁ ପକେଟ୍ ଖର୍ଚ୍ଚ ସଂଗ୍ରହ କରି ପାରନ୍ତି । କିମ୍ବା ନ ହେଲେ ଏ ଝିଅପିଲାମାନଙ୍କ ଆଗରେ ନିଜର ହିରୋଇଜମ୍ ପ୍ରମାଣ କରିବାପାଇଁ କିଛି ନା କିଛି ଗୋଟା ସକାଳୁ ସକାଳୁ ତା ଉପରେ ଆରମ୍ଭ କରିଦେଇ ପାରନ୍ତି । କପଟ ବିପଦର ସୂଚନା ପାଇଲା ଜୟଦେବ । ମନେ ମନେ ଯେତେ ଶୀଘ୍ର ପାରେ ଠାକୁର ଠାକୁରାଣୀଙ୍କୁ ଡାକିଗଲା ସେ ।

"ଏ ପରିତୋଷ ! ଏଇଟା ତ ପୁରାପୁରି ହନୁଟାଏ । ପାଟିରେ ଭୁଣ୍ଡି ବାନ୍ଧି ଛୁଡ଼ା ହେଲାଣି । କାହିଁକି ଏଇଟାକୁ ଡାକି ବୋର୍ କଲ ଆମର ଏ ଅ.ସରକୁ ।" ଜୟଦେବ ଉପରେ ଟିପ୍ପଣୀ କାଟିଲା ନିଜକୁ ସବୁଠାରୁ ସ୍ମାର୍ଟ ଭାବୁଥିବା ସେହି ଦାଲୁଆ ଝିଅଟା ।

"ଛି," ମନେ ମନେ ଖୁବ୍ ବିରକ୍ତ ହେଲା ଜୟଦେବ । "ଏଗୁଡା ଝିଅପିଲା ହୋଇଛନ୍ତି । ଡ୍ରେସ୍ ପିନ୍ଧା ହୋଇଛି !" ନାରୀର ସମସ୍ତ ଗୁପ୍ତଅଙ୍ଗ ସତେକି ସେ ଡ୍ରେସ ଭିତରୁ ବାହାରକୁ ଉଙ୍କିମାରି ଚାହୁଁଛନ୍ତି । ନିଜର ବେଢଙ୍ଗା ଦାନ୍ତକୁ, ବ୍ରଣଭରା ମୁହଁର ବୀଭତ୍ସତାକୁ ଘୋଡେଇବା ପାଇଁ ଏ ନଗ୍ନତାର ପରିସ୍ଫୁଟନ କରିବାକୁ ଖୁବ୍ ଯତ୍ନ ନେଇଛି କିଷ୍କିନ୍ଧା । ଓ— ସେଥିରେ ପୁଣି ହସ···ଯୁାପ୍ପ ସତେକି ମୁକ୍ତା ଝଡ଼ିପଡୁଛି ହସରୁ । ଏ ଶାଳା ବଜାରୁଙ୍କୁ ଖାଲି ସିଧା ଫାଡ଼ିଦେବାକୁ ମନ ହେଉଛି । ମନେ ମନେ ନିଜର ବୀରତ୍ୱକୁ ଖୁବ୍ ତାରିଫ୍ କରୁଥିଲା ଜୟଦେବ । ହେଲେ ଏ ହିପ୍ପୀ ଟୋକାଗୁଡ଼ାକ । ଇଏରେ ବାପ୍‌ରେ···ତା ମନୋଭାବ ଯଦି ଟିକିଏ ଜଣାପଡ଼ି ଯାଏନା ତେବେ ସର୍ବନାଶ । ନିଜକୁ ଯଥାସମ୍ଭବ ଗମ୍ଭୀର ଆଉ ନିରୀହ ମୁଦ୍ରାରେ ରଖି ସୁନାପିଲାଙ୍କ ଭଳି ଛିଡ଼ାହେଲା ଜୟଦେବ··· ।

"ଆରେ ତୁମେ ଏ ମହାମାନ୍ୟଙ୍କୁ ଜାଣିନ ବୁଲ୍ ବୁଲ୍ । ଏ ଶଳା କଲେଜରେ ଥିଲାବେଳେ କପି ଧରି ମୋତେ ···ଟା ଅନର୍ସ ପରୀକ୍ଷା ଦେବାରୁ ବଞ୍ଚିତ କରିଥିଲା । ଏଇନେ, ଶଳା ନେତା ହେଉ ହେଉ ଅଧାରୁ ଚିତ୍‌ପଟାଙ୍ଗ୍ ମାରିଛି । ଶଳା ପୂର୍ବପୂରି ମଫତ୍ ।" ପରିତୋଷ ଜୟଦେବର ଦୟନୀୟ ଅବସ୍ଥା ଦେଖି ସାତେକି ଦୟା ପ୍ରକାଶ କଲା ।

"ଶୁକଶି ଗୁଡ଼ ଥରେ ଏମ୍. ଏଲ୍. ଏ. ହୋଇଗଲା ବୋଲି ଭାବିଲା ସ୍ୱର୍ଗକୁ ଚାଲିଗଲା । ବେଶୀ ପାଠ ପଢ଼ିଲେ କୁଆଡ଼େ ସ୍ୱାଁଙ୍କୁ ମନ୍ତ୍ରୀ କରି ପକେଇଥାନ୍ତେ । ଆରେ ବୋକା ମନ୍ତ୍ରୀହେବା ଗୋଟା ଆର୍ଟ, ଗୋଟା ନିହାତି କୌଶଳ । ଆଉ ତମେ ଆମେ ମାଷ୍ଟ୍ର ଜାତି, ମିଛ କହିବାନ—ମାତ୍ର ଦୃଷ୍ଟିରୁ ଏଇଟା ହେବନାହିଁ । ଆରେ ମାତ୍ର ଦେଖେଇବ ତ ଆଶ୍ରମକୁ ଯାଅ ।

ଏକ ସମୟରେ ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ଝିଅଗୁଡ଼ାଙ୍କ ହସ ପୁଣି ବେଶୀ ମାରାତ୍ମକ । ସତେକି ଫୁଲଝରି ବାଣ ଚଡ଼ଚଡ଼ ହୋଇ ଝରୁଛି । ଜୟଦେବର ମନ ହେଉଥିଲା ସିଧାପାଇଁ ଗୋଟା କାହାର ଚୁଟିଧରି ଝିଙ୍କି ଆଣନ୍ତା । କିନ୍ତୁ ସେମାନଙ୍କର ଯେଉଁ ବଡ଼ିଗାର୍ଡ ଅଛନ୍ତି, ଇଏରେ ବାପରେ ।

"ମୋତେ ଚିହ୍ନୁଛନ୍ତି ତ ସାର୍ ! ମୁଁ, ପରିତୋଷ । ମୋ କପି ଧରି ମୋପାଇଁ ଖୁବ୍ ଗୋଟା ବଡ଼ିଆ କାମ କରି ନଥିଲେ । ଆଜ ଶୁକଶାତ ଗଲା,

ଏମ୍. ଏଲ୍. ଏ. ହୋଇଥିଲ ଯେ ସେଥିରୁ ବି ଏଥର କାଟ୍ ଖାଇଲ । ଏଥର ବାପ ଜୟଦେବ, କ'ଣ କରିବ ?

"ଦେହି ପଦ ମୁଦାରଂ" ସଂସ୍କୃତ କବିତା ଲେଖିବେ ଜଗନ୍ନାଥଙ୍କୁ କେନ୍ଦ୍ରକରି । କାହିଁକି ଶଳା ତୁମକୁ କାଏ ମଗିଷ କହୁଥିଲାରେ ! ବୁଝିଲୁ ପରିତୋଷ, ଏ ଶଳା ଥରେ ଗୋଟିଏ ଇଣ୍ଟରଭିଉ ବୋର୍ଡ଼ରେ ମେମ୍ବରଥିଲା । ମୁଁ ଇଣ୍ଟରଭିଉ ଦେଉଥିଲି । ଗ୍ରାମବୋଲି ଚିହ୍ନାଦେଇ ଟିକେ ସାହାଯ୍ୟ କରିବାକୁ କହିଲି ଯେ ଶଳା ତ ହିମାଳୟର ସାଧୁଭଳି ମାତି ଝାଡ଼ିଲା—ଯାହା ହେବାରଥିବ ହେବ, ମୁଁ କ'ଣ କରିବ । ହେଲେ ଜଣେ ମନ୍ତ୍ରୀଙ୍କୁ ଭେଟି କହିଲି, ସଙ୍ଗେ ସଙ୍ଗେ ଅଫିସରଙ୍କୁ ଫୋନ୍‌କରି କହିଲେ । ଯାଃ, ଶଳା ଅନେଇଚ କମିତି ଦେଖ··· ।

"ଆରେ ବିଚରା କାନ୍ଦ ପକେଇବ କି କ'ଣ ? ଆହା ହା, ସବୁଥିରୁ ବଞ୍ଚିତ କର ।" ଟିପ୍‌ପଣୀ ଦେଲା ଆଉ ଜଣେ ଉଦ୍ଧତା ଯୁବତୀ ବୈଜୟନ୍ତୀ । ସମସ୍ତେ ଏକ ସମୟରେ ପୁଣି ହୋ ହୋ ହୋଇ ହସି ଉଠିଲେ । ଆଃ କି ବିଭତ୍ସ ଲାଗୁଛି ସତେ ଏମାନଙ୍କ ହସ ! ଜୟଦେବ ବିଚରା ସତରେ ବଡ଼ ଅପ୍ରୀତିକର ଅବସ୍ଥାର ସମ୍ମୁଖୀନ ହୋଇଛି । ଏମ୍. ଏଲ୍. ଏ. ଥିବା ସମୟରେ ଏଇମାନେ ତାକୁ କେତେଥର ମୁଣ୍ଡ ନୋଇଁ ନମସ୍କାର କରିଛନ୍ତି । କେତେ ଭଦ୍ରଭାବରେ କଥାବାର୍ତ୍ତା କରିଛନ୍ତି । ଆଉ ଆଜି ସତରେ ସେ ସବୁଥିରୁ ବଞ୍ଚିତ । କାଲି ଗୋଟିଏ ସାମାନ୍ୟ କାର୍ଯ୍ୟପାଇଁ ସେକ୍ରେଟାରିଏଟ୍ ଯାଇଥିଲା ସେ । Deputy Secretaryଙ୍କୁ ସାକ୍ଷାତ କରିବା ତା ପକ୍ଷରେ କଷ୍ଟକର ହେଲା । କେଇଦିନ ତଳେ ଯୋଉ ପିଅନ ନମସ୍କାର କରି ବାଟ ଛାଡ଼ି ଦେଉଥିଲା, ସେହି ପିଅନ ଆଜି Slip ନେଇ ବି ଅଫିସରଙ୍କୁ ଶୀଘ୍ର ଦେଲା ନାହିଁ । ବହୁ କଷ୍ଟରେ Slip ନେଇ ଭିତରକୁ ଗଲା ମାତ୍ର ଫେରିବାକୁ ତାକୁ ଅନେକ ସମୟ ଲାଗିଲା । ଏମ୍. ଏଲ୍. ଏ. ଥିବା ସମୟରେ କେବେ ଜୟଦେବ ଅଫିସରମାନଙ୍କ ପ୍ରଭାବ ପକାଇବା ପାଇଁ ହାକିମୀ ଦେଖାଇ ନାହିଁ, ତେଣୁ ଆଜି ଅଫିସରମାନେ ତାକୁ ଡରିବେ ବା କାହିଁକି ? ଅଫିସରେ ଟେବୁଲ ବାଡ଼େଇ, କଣ୍ଠ ବୁଝି ନ ବୁଝି ବଡ଼ ପାଟିରେ ଅଯଥା ଯୁକ୍ତିତର୍କ କଲେ ଠାଣୁଆ ଏମ୍. ଏଲ୍. ଏ. ହୋଇଲା । ଯୁକ୍ତି ଦେଇ ଧୀର ନମ୍ରକଣ୍ଠରେ କହିଲେ ଏଇଟା 'ଗବା'ଟାଏ ବୋଲି ଅଫିସରଙ୍କର ବି ଧାରଣା

ହୋଇଯାଏ । ସେହି ଗବାଙ୍କ ଭିତରୁ ଜଯୁଦେବ ଜଣେ । ପାଠ ଗୁଡ଼ାଏ ପଢ଼ିଲେ କ'ଣ ହେବ ବୁଲି ପିଟି କିଛି କହିବାକୁ ତା ମାଷ୍ଟରଆଗୁଡ଼ି ତାକୁ ଶାଳୀନତା ବିରୋଧୀ ବୋଲି ଶିକ୍ଷା ଦେଇଛି ଯେ ! ସତରେ ଏ କିଷ୍କିନ୍ଧା ସୁନ୍ଦରୀର ଟିପ୍ପଣୀ ଅନୁସାରେ "ବରବ୍ର"···

ବହୁ କଷ୍ଟରେ Deputy Secretaryଙ୍କୁ ଭେଟି କେତେକ ନ୍ୟାଯ୍ୟୋଚିତ ସମସ୍ୟା ଉପରେ ଆଲୋଚନା କଲା । ଆଦିବାସୀ ଗ୍ରାମମଙ୍ଗଳ ବିଭାଗର ଦୋଷ ତ୍ରୁଟି ସମ୍ପର୍କରେ ଦୃଷ୍ଟି ଆକର୍ଷଣ କଲା । ହେଲେ Deputy Secretary ଆଜି ଅନ୍ୟ ରକମର ମଣିଷ । ଜଯୁଦେବ ଦିନେ ତାଙ୍କର ଦୁର୍ନୀତି ସମ୍ପର୍କରେ ଖୋଳତାଳ କରିଥିଲା । ତେଣୁ ଆଜି ଅଫିସର ତାଙ୍କର ଅଫିସରିଆ ଢଙ୍ଗରେ ସେ ପୂର୍ବ ଅସନ୍ତୋଷର ପ୍ରତିଶୋଧ ନେଇ ନେଲେ । "ଆଜିକାଲି ସବୁ ଅନର୍ଥର ମୂଳ ଏଇ ରାଜନୀତିର ଲୋକମାନେ । କିଛି କରେଇ ଦେଉ ନାହାନ୍ତି ଆମକୁ । କିଛି କାର୍ଯ୍ୟ କଲେ ତ ପଡ଼ିଲା ସରକାରୀ କୃପା । ସାଧାରଣ ପିଅନଟିଏ ବଦଳି ପାଇଁ ମନ୍ତ୍ରୀମାନେ ବି ହାତ ପକାଉଛନ୍ତି । ଆପଣ ଆମକୁ କହୁଛନ୍ତି ଯେ ଜଯୁଦେବବାବୁ ଆମେ କରିବୁ କ'ଣ ? My hands are tight—ସେ welfare Extension officer ଯଦି Stipend ଟଙ୍କା ପିଲାଙ୍କୁ ନ ଦେଇ ମାଷ୍ଟ୍ରମାନଙ୍କ ସହାୟତାରେ ଅଧେ ଖାଇଯାଉଛି, ତେବେ ମୁଁ ନିରୁପାୟ । ଆପଣ ମନ୍ତ୍ରୀଙ୍କୁ କହନ୍ତୁ···Pleas go !' ସତେ କି ଅଫିସର ଜଣକ ତା କାନମୋଡ଼ି ତାକୁ ତାଙ୍କ ଅଫିସର ଉଡ଼ ବାହାର କରିଦେଲା, ବରବ୍ର···

"ଆରେ ସାର୍ ଏକବାର ଦାରୁବନ୍ତ ମୁରବୀ ହୋଇ ଗଲେ ଯେ, କିଛି କହନ୍ତୁ । ଟାଉଟରୀ କମୁଛି ତ, ମାଷ୍ଟ୍ର ଗୃକିରୀ ତ ଭଲ ଲାଗିଲା ନାହିଁ । ଏବେ ଏ ଟାଉଟରୀ···ମୋ କପି ନ ଧରିଥିଲେ ଆଜି ମୁଁ କ'ଣ ଏପରି ଲକ୍ଷପତି ହୋଇ ପାରିଥାନ୍ତି । ପାର୍ଟିଟାଏ କରି ଏଇ ସେକ୍ରେଟାରିଏଟ୍ କି କେଉଁଠି କିରାଣୀଟାଏ ହୋଇଥାନ୍ତ ତ । ଏଇନେ, ବିଜନେସ କରି···" ପରିତୋଷ କହିଲା ।

"ଆବେ ବିଜନେସ କ'ଣବେ, ଗୈରବଜାରୀ କହ । ଏ ଶଳା ରାଜନୀତିବାଲାଏ ବୁଡ଼ି ବୁଡ଼ି କରନ୍ତି ଆଉ ଆମେ ସବୁ ଟିକେ ଓପନ ହୋଇଯାଉ । Cement. Babyfood, ଲୁହାଛଡ଼ ବ୍ୟବସାୟ ତ କିଛି

କମ୍ ବେପାର ନୁହେଁ । କ'ଣ ସାର୍, ଆଜି ତ ଆପଣ ପୂରାପୂରି ବେକାର । କରିବେ ଏ ବେପାର ? କିଛି ନ ହେଲେ ଘରି ତ ଏକେନେ ଗୃହିଣୀଙ୍କ ପାଇଁ ଦରଦ ! କରନ୍ତୁ ନା ସାର୍ କାରବାର, ଭଲ ଦୁପଇସା ମିଳିବ ?"

ସତରେ କିଏଙ୍କ ପଛକୁ କିଏ ଯେମିତି ପ୍ରସ୍ତୁତ ହୋଇ ରହିଛନ୍ତି ଜୟଦେବଙ୍କୁ ଅପମାନିତ କରିବା ପାଇଁ । ଅପରାଧ ଭିତରେ ସେ ଆଜିକାଲିର ଆବହାଓ୍ୱା ଭିତରେ ବରଂ Completely unfit ବ୍ୟକ୍ତିଟିଏ । ଆଦର୍ଶ ପଛରେ ଗୋଡ଼ାଇ ନା ଆଦର୍ଶ ରଖିପାରିଲି, ରାଜମାର୍ଗରେ ପଶି ନା ରାଜମାର୍ଗ କରିପାରିଲି । ସତରେ ଜୟଦେବ ଏ ଯୁଗରେ ଏକ ଅସମ୍ଭବ ବ୍ୟତିକ୍ରମ । ଯାହାପାଇଁ ସେ ଲାଗିଛି ପ୍ରାଣପଣେ ତାର ମଙ୍ଗଳ ପାଇଁ ଚେଷ୍ଟା କରିଛି ହେଲେ ଆଗକୁ ବାହାର ନିର୍ଲେମାଡ଼ 'ତୋ ପାଇଁ ସ୍ୱା କରୁଛି' ବୋଲି ଅଭିନୟ କରିପାରେନା ବୋଲି କେହି ତା ପରିଶ୍ରମର ମୂଲ୍ୟ ଦେଇ ନାହାନ୍ତି । ନିର୍ବାଚନମଣ୍ଡଳୀ ପାଇଁ ସମସ୍ତ ଶକ୍ତି, ସମସ୍ତ ସାମର୍ଥ୍ୟ ଦେଇ କଠିନ ପରିଶ୍ରମ କଲେ ମଧ୍ୟ "ଆମ ଗାଁକୁ କାହିଁକି ଆସିଲ ନାହିଁ" ଆଳରେ ସେ ଭୋଟ ପାଇଲା ନାହିଁ । ବରଂ କୋଉ ବାଟରେ କ'ଣ କରିବ । ସବୁଆଡ଼େ ଆଜି ଯେମିତି ତା ଅଯୋଗ୍ୟତାର ଡିଣ୍ଡିମ ବାଜୁଛି । ତା'ର ପୂର୍ବବର୍ତ୍ତୀ ପ୍ରତିନିଧିମାନେ ନିର୍ବାଚନମଣ୍ଡଳୀ ପାଇଁ କିଛି କରି ନ ଥିଲେ, ହେଲେ ଜୟଦେବ ଯଥେଷ୍ଟ କରିଛି । କିନ୍ତୁ ସେ ଲୋକଙ୍କୁ ଠିକ୍ ଚିହ୍ନିପାରିଲା ନାହିଁ । କାମରେ ଭୋଟ ମିଳେ ନାହିଁ, ମିଳେ ଗପ ମାରିବାର ବାହାଦୁରୀରେ । କିଛି ନ କରି ସବୁ କରିଦେବ କହିପାରିବାର କୌଶଳରେ ।

ସମୂହ କାମ ପାଇଁ କହିବା ଖାଲି ଲୋକଦେଖାଣିଆ କଥା । ଯୋଉ ପର୍ଯ୍ୟନ୍ତ ନିଜ କାମ ହୋଇ ନାହିଁ । ପୁଅର ଚାକିରି, ଝିଅର ବଦଳି । ଜୋଇଁର ପ୍ରମୋଶନ, ନାତିର ବ୍ୟାଙ୍କରୁ ଲୋନ ବା ଆଉ କାହାର କିମିତି ନିଜ କଥା ହୋଇ ନାହିଁ । ତେବେ ସମୂହ କାମର ଦୁହାଇଦେଇ ଯାଞ୍ଚା ତା କୁହାଯାଇ ପାରେ, ଶଳା ଏମ୍. ଏଲ୍. ଏ. ହୋଇଛି । ଆଉ ମଣିଷ ଦେଖାଯାଉ ନାହାନ୍ତି, ଖାଲି ବଡ଼ବଡ଼ଆଙ୍କ ପଛରେ ଲାଗିଛି । ଆମେ ଗରିବ ଲୋକ, ଆମକୁ ପଚାରୁଛି କିଏ ? ପ୍ରଥମେ ପ୍ରଥମେ ଜୟଦେବ ଏସବୁ

ଶୁଣି କିପରି ଅତିଷ୍ଠ ହୋଇ ଉଠୁଥିଲା । ତା ପାଇଁ ତା ଘରର ସମସ୍ତଙ୍କୁ ଛୋଟକଥାରେ ଅତି ଅଶ୍ଳୀଳ ଭାବରେ ଟିକା ଟିପ୍ପଣୀ ଦେବାକୁ ସେ କିପରି ଖୁବ୍ ଗର୍ହିତ କାର୍ଯ୍ୟ ବୋଲି ଭାବୁଥିଲା । କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ପୁରୁଣା ସଦସ୍ୟମାନେ ଜୟଦେବକୁ ବୁଝାଇ ଥିଲେ । "ଆରେ ବାବୁ ନୂଆ ଡାଆଣୀ ଘୁଅ ଖାଇଲା ଭଳି ଏତେ ଟଙ୍ଗ ଟଙ୍ଗ ହେଉଛ କାହିଁକି ? ରାଜନୀତି କ୍ଷେତ୍ରରେ ଏ ଗୁଡ଼ା ସବୁ ନିତିଦିନିଆ କଥା । କିଏ କ'ଣ ପଛରେ କହିଦେଲା ବୋଲି, ତମେ ଏତେ ବିକଳ ହେଉଛ କାହିଁକି ? ଗଣତନ୍ତ୍ର ଦେଶ, ଲୋକେ ଗଣତାନ୍ତ୍ରିକ ଅଧିକାର ପାଇଛନ୍ତି, କହିବେ । ବିଶେଷ କରି ଗଣତାନ୍ତ୍ରିକ ଅଧିକାର ଖଟେଇ ଯାହାକୁ ପ୍ରତିନିଧି କରିଛନ୍ତି, ତାଙ୍କୁ ଗଣତାନ୍ତ୍ରିକ ଭିତ୍ତିରେ ଏ ମଧୁର ବଚନରୁ କିଛି ଦେବେ ନାହିଁ ତ ଦେବେ ଆଉ କ'ଣ ?

କ୍ରମଶଃ ଏସବୁ କଥା ଜୟଦେବର ସହରେ ଦେହସୁହା ହୋଇଗଲା । ତୋଧା ଗାଳି ଖାଇବା ଏମ୍. ଏଲ୍. ଏ. ଙ୍କ କର୍ତ୍ତବ୍ୟର ଏକ ଅଙ୍ଗବୋଲି ସେ ଧରି ନେଲା । ମାତ୍ର ସମୟେ ସମୟେ ମଦୁଆମାନଙ୍କର ଯେଉଁ ଆକାଶ ଛୁଆ ଦମ୍ଭୋକ୍ତି, ଆସ୍ଫାଳନ ସେ କଥା ମନେ ପଡ଼ିଲେ ବିଚରା ଜୟଦେବର ମନ କ'ଣ ହୋଇଯାଏ ।

ସେଦିନ କୌଣସି ଏକ ଉତ୍ସବସାରି ଫେରୁଥାଏ ଜୟଦେବ । ବେଶ୍ ଉତ୍ସାହପ୍ରଦ ଉତ୍ସବ । ବାଟରେ କେତେକ କର୍ମୀମାନଙ୍କ ସହ ଆଲୋଚନା କରୁଥିବା ସମୟରେ ନିଜକୁ ସବ୍‌ଜାନତା ଭାବୁଥିବା ବିପିନ ମହାନ୍ତି ଖୁବ୍ ମୋଟା ଘମାଘୋଟିଆ ନିଶା ଜୋର୍‌ରେ ପହଞ୍ଚିପାଇଁ ଅତି ଅଶ୍ଳୀଳ ଭାବରେ ଗାଳିଗୁଲଜ କରି ଚାଲିଗଲା । ଅପରାଧ ତା'ର ମଦଖିଆ ପାଇଁ ସେ କିଛି ପଇସା ପାଇଲାନାହିଁ । ଥାନା ଅଫିସରଙ୍କୁ ଧରି ଯେଉଁ ଠାଉଁଠିଆ କରୁଥିଲା, ସେତିକ ଜୟଦେବ ବନ୍ଦ କରିଦେଲା ।

"ଏ ପରିତୋଷ ! ସକାଳୁ ସକାଳୁ ଏ ବିଚିତ୍ର ମଉମୀ ବାବାଙ୍କୁ ଡାକି ଆମକୁ ସବୁ ବୋକା ବନେଇଦେବୁ ନା କ'ଣ ? ଓ ବାବା, ଜୟଦେବ ତୁମ ଆଧୁନିକ ଗୀତ ଗୋବିନ୍ଦରୁ କିଛି ହେଉ ?" ପରିହାସ କଲା ଲମ୍ବାକଳିଆ ମଧ୍ୟାହ୍ନିତ କାମଦେବ ।

"ବୁଝିଲ କାମଦେବ ! ଆଜିକାଲି ଯୁଗକୁ ଏ ବୁଢ଼ାସବୁ ନିହାତି unfit. ଦେଶପ୍ରେମ କହିଲେ ଶାଳଙ୍କ ପାଟିରୁ ପଦେ କଥା ତ ବାହାରୁନାହିଁ । ଏମାନେ କ'ଣ ଦେଶସେବା କରିବେ । ନିଜ ସେବା ତ କରିବା ଏମାନଙ୍କ ପକ୍ଷରେ ଅସମ୍ଭବ ବ୍ୟାପାର । ଟିପ୍‌ପଣୀ କାଟିଲି ସେହି ଚରଚରି ଦାନ୍ତରି ଝିଅଟା—ବୁଝିଲ କାମଦେବ, ଏମାନଙ୍କୁ ସମାଜରୁ ବାହାର କରିବା ଉଚିତ ।"

"ଓଃ କାମଦେବ ନା ରକ୍ତଚନ୍ଦନ କନ୍ଦର୍ପ ! କଳା ଯୋଡ଼ି ତ ଚେହେରା, ସେଥିରେ ପୁଣି ଗୋଟାଏ ଆଖି କଣା । ନା ପୁଣି କା-ମ-ଦେ-ବ୍ ।" ଖୁବ୍ ଘମାଘୋଟିଆ ରାଗିଗଲା ଜୟଦେବ । ତେବେଲେ ମୁହଁ ଖୋଲି କିଛି କହି ହେଉ ନାହିଁ । କହିଲେ ତ ଆଇନ-ଶାସନ ସବୁ ଏ ମାଙ୍କଡ଼ମାନେ ହାତକୁ ନେଇନେବେ । ବିଚରା—

"ମୁଁ ମୋ ବାଟରେ ଯାଉଥିଲି । ଆପଣମାନଙ୍କର ତ ମୁଁ କିଛି କ୍ଷତି କରିନି ।" ଡରି ଡରି ଏତିକି କହିଲା ଜୟଦେବ ।

"ଇରେ ବାବା, ଶୂନ୍ୟ ପୁରୁଷଙ୍କର ଅମୁହାଁ ଦେଉଳ ତା ହେଲେ ଖୋଲିଲା । ବୁଝିଲ ପରିତୋଷ ! ଏ ତୁମର କିଛି କ୍ଷତି କରିନାହାନ୍ତି । କାହିଁକି ବିଚରାକୁ ଉଦେଇ ଏତେବେଳ ପର୍ଯ୍ୟନ୍ତ ପ୍ରେମ ସମ୍ଭାଷଣ କଲ ।" ପାଟିପୁରି ହସି ହସି ଏତକ କହିଲା ନଳୀପେଣ୍ଟ ପିନ୍ଧା ସରୁ ଝିଣୁଆ ପ୍ରେମ କୁମାର ।

"ଆରେ ୟାର୍, ଚଳିବ ତ । ସାର୍ ଆଉ ୟାର୍ ମଧ୍ୟରେ ବିଶେଷ ତଫାତ ତ ନାହିଁ । ଅନେକଦିନ ତଳେ ସାର୍ ଡାକୁଥିଲି ଏବେ ୟାର୍ ଡାକିଲେ ବିଶେଷ କ୍ଷତି ହୁଏ ତ ନାହିଁ । ଆପଣ ମୋର କ୍ଷତି କରି ନାହାନ୍ତି ତେବେ କରିଛି କିଏ ? ଅବଶ୍ୟ ଆପଣ ମୋର କ୍ଷତି କରୁକରୁ ଭଗବାନ ମୋର ଲାଭ କରୁଛନ୍ତି । ଯା ମନ୍ଦ ପାଞ୍ଚନ୍ତି ଗୋବିନ୍ଦ, ନାହିଁ—ୟାପ୍‌ପ···କ'ଣ କଥାଟା ତ···

"ଯେ ପାଞ୍ଚେ ଅନ୍ୟର ମନ୍ଦ···କହୁଥିଲା ବୈଜୟନ୍ତୀ··· ।

"ତା ମନ୍ଦ ପାଞ୍ଚନ୍ତି ଗୋବିନ୍ଦ । ବୁଝିଲେ ବାବୁ ଜୟଦେବ, ଏବେ ଗୀତଗୋବିନ୍ଦର ପଦ ଭୁଲିଗଲେ ପ୍ରଣୟିନୀ ପଦ୍ମା ଆଉ ପଦ କହିଦେବାକୁ

ଆସିବେ ନାହିଁ ତୁମ ପାଖକୁ । ତୁମକୁ ଜଗନ୍ନାଥ ପୁଲିସ୍ ପୁର ସ୍କ୍ୱାଡ଼ ଆମୃତାଖରେ ବର୍ତ୍ତମାନ । ଖାଲି ମୋ ନୂଆ ମିଲ୍‌ଟା Start ହୋଇଯାଉ । ତା'ପରେ ତମ ବି Election ଗୁଡ଼ା ନାଁରେ ମୋ ପାଖରେ ହାତ ପତେଇବ । ସାର୍, ଆଉ କିଛି ହୁଅନ୍ତୁ ବୋଲି ଅଳି କରିବ ଆଉ ମୁଁ···ହା-ହା । ଏକ ଭୟଙ୍କର ଅଟ୍ଟହାସ କଲା ପରିତୋଷ । ଆଉ ବିଚରା ଜୟଦେବ, ସମସ୍ତ ଅସ୍ୱାଭାବିକତା ଭିତରେ ମଧ୍ୟ ନିଜ ମନର ପ୍ରତିକ୍ରିୟା ପ୍ରକାଶ କରିବାର କୌଣସି ଅବକାଶ ପାଉନଥିଲା । ହୃଦୟ ବିଦୀର୍ଣ୍ଣ ହୋଇ କୋହ ଉଠି ଆସୁଥିଲା । କିନ୍ତୁ କାନ୍ଦି ପାରୁନଥିଲା ସେ ।

"ଆପଣ ଏ ଯୁଗରେ ଏକ ନବଗୁଞ୍ଜର ସାର୍ । ଆପଣଙ୍କୁ ଦେଖି ଲୋକେ କୌତୁକ କରିବେ । ଆପଣଙ୍କ କିମ୍ଭୂତକିମାକାର ଭାବଧାରା ଦେଖି ଦୟା କରିବେ ସିନା । ହେଲେ ଆପଣଙ୍କ ପ୍ରତି କାହାର ଭୟ ରହିବନି । ଆଉ ଭୟ ନଥିଲେ କାର୍ଯ୍ୟ କିପରି ହୁଏ ଆପଣ ତ ଜାଣନ୍ତି ସାର । ଏଇ ପରିତୋଷ, ମୋତେ ପ୍ରଥମେ ବନ୍ଧୁତ୍ୱର ହାତ ବଢ଼େଇଲା । ଗୃହିଣୀ ପାଇଁ ବିଭିନ୍ନ ଲୋକେ ମୋତେ ଅନେକ ସ୍ଥାନକୁ ନେଇ ଭଲ ଭଲ କରି ଉପଭୋଗ କରିଛନ୍ତି । ଭାବିଥିଲି ପରିତୋଷ ସେହିମାନଙ୍କ ଭିତରୁ ଜଣେ । କିଛି ଅର୍ଥର ବିନିମୟରେ ଦିନକ ପାଇଁ ତାର ମୁଁ ଶଯ୍ୟା ସଙ୍ଗିନୀ ହେବି । ମାତ୍ର ପରିତୋଷ ମୋତେ ପ୍ରତାରିତ କରିନାହିଁ । ତା ରୋଜଗାରରୁ କିଛି Share ମୋତେ ସେ ଦେଉଛି । ଅବଶ୍ୟ ତା ବିନିମୟରେ ଅନେକଙ୍କ ପାଖରେ ମୁଁ ରାତିକଟେଇ ତା ପାଇଁ କିଛି କାର୍ଯ୍ୟ କରୁଛି । ଆଜିକାଲି ଏ ସବୁତ ଅତି Common Sir । ହେଲେ ଆପଣଙ୍କ ପାଖକୁ ମୁଁ ସେଦିନ ଯାଇଥିଲି । ଟଙ୍କା ୧୦ ହଜାର ଯାଚିଲି । ବଦଳରେ ସେଠାରେ ରହିବାର ସମସ୍ତ ଇଙ୍ଗିତ ଦେଲି । ଆପଣ କିନ୍ତୁ ମୋତେ ପାଖରୁ ବାହାର କରିଦେଲେ । ହେଲେ ସେହିଦିନ ରାତିରେ ବୁଢ଼ା ମନ୍ତ୍ରୀଟା ମୋ ଦେହକୁ ତା ଦେହରେ ଶାପ ଗୁଡ଼େଇଲା ପରି ଟାଣି ଧରି ମାତ୍ର ୫ ହଜାର ଟଙ୍କାରେ ସବୁ କାମ କରିଦେଲା । ଆପଣ ନିର୍ବୋଧ ସାର୍ । ନୀତିବୋଧ, ଆଦର୍ଶ ଏସବୁ ଏ ଯୁଗରେ ଏକ ଅଯଥା ସ୍ଲୋଗାନ । କିଏ ଟଙ୍କା ଖାଉନାହାନ୍ତି । ଶୁଣନ୍ତୁ···ସେ ଏବେ ଯାଆନ୍ତୁ ପରିତୋଷ···" ଏତିକି କହିଲା ଏ ପର୍ଯ୍ୟନ୍ତ ଚୁପ୍‌ଥିବା ଝିଅ ଅନୁପମା··· ।

"ଅଗତ୍ୟା···ଅନୁପମା ଯେତେବେଳେ କହିସାରିଲଣି, ଆଉ ତୁମକୁ ବେଶୀ କଷ୍ଟ ହଇଥିବ ନାହିଁ । ଅନୁପମା କଥାକୁ ଆଦୌ ଧରିବେନ ସାର୍ । ଏମାନେ ଆମର "ଯୌବନ ଜୁଆର" କ୍ଲବ୍‌ର ସମସ୍ତେ ମେମ୍ବର । ଆମ ଭିତରେ ସେକ୍‌ସ ନେଇ କୌଣସି Limitation ନାହିଁ । ଯାଆନ୍ତୁ, Bye···' ପରିତୋଷ ସତେକି ଦୟାକରି ଜୟଦେବଙ୍କୁ ଛାଡ଼ିଦେଲ ଆଉ ଜୟଦେବ ପ୍ରାଣନେଇ ସେ ସ୍ଥାନ ଛାଡ଼ି ପଳେଇଲା । ପଛରୁ ବହୁଦୂରକୁ ସେହି ସକାମ ଯୁବକ ଯୁବତୀମାନଙ୍କର ବେତାଳିଆ ହସର ଜୁଆର ତାକୁ ଶୁଭୁଥାଏ ଆଉ ସେ ପ୍ରାଣ ହକଲିରେ ଯେତେ ଶୀଘ୍ର ପାରେ ଏ ଶବ୍ଦ ଜୁଆରଠାରୁ ଦୂରରୁ ଦୂରକୁ ପଳେଇ ଯିବାକୁ ଚେଷ୍ଟା କରୁଥାଏ । ଆଗରେ ପଛରେ କିଏ ଆସୁଛି ସେଥିପ୍ରତି ତା'ର ଆଦୌ ଦୃଷ୍ଟି ନଥାଏ । ହଠାତ୍ କାହା ଦେହରେ ଏକ ଜୋରଦାର୍ ଧକ୍‌କା ବାଜିବାରୁ ଥମକି ଛିଡ଼ାହେଲା ଜୟଦେବ । ସର୍ବନାଶ ଧକ୍‌କା ପୁଣି ଜଣେ ଯୁବତୀ ସହିତ । ଉପରେ ପଡ଼ି ଭଦ୍ରାମୀ କରିବାକୁ ଏଇନେ ଲୋକେ ଆସି ଗଦାହୋଇ ପଡ଼ିବେ । ଯୁବତୀଟିର ନିକଟତର ହେବାକୁ କେତେକ ବର୍ତ୍ତମାନ ହିରୋଇଜମର Experiment ଜୟଦେବ ଉପରେ ଆରମ୍ଭ କରିଦେବେ । ଭୟରେ ଜୟଦେବର ମୁହଁ ବିବର୍ଣ୍ଣ ହୋଇଗଲା ।

ଆଜ୍ଞା କ୍ଷମା କରିବେ । ମୁଁ ଅନ୍ୟମନସ୍କ ଥିଲି, ମୋର ଏ ଇଚ୍ଛାକୃତ କାର୍ଯ୍ୟ ନୁହେଁ··· ।" ଜୟଦେବ ଲଜ୍ୟାରେ ଯୁବତୀଟିର ମୁହଁକୁ ଅନେଇ ପାରୁନଥାଏ ସତେକି ।

"ନା—ତେବେ ରାସ୍ତା ଚାଲିବା ବେଳେ ଅନ୍ୟ ମନସ୍କ ହେବା ତ ଉଚିତ ନୁହେଁ ଦେବଭାଇ ! ନମସ୍କାର ।" ଅନେକ ଦିନର ଖୁବ୍ ପରିଚିତ କୋମଳ ସ୍ୱରରେ ଜୟଦେବର ତନ୍ଦ୍ରା ସତେକି କଟିଗଲା । କାହାକୁ ଦେଖୁଛି ସେ । ଆଗରେ—ଶିଖା—ଡାକ୍ତର ଶିଖା ମହାନ୍ତି । ଯାହାର ସ୍ମୃତି ଆଜି ବି ଜୟଦେବର ମନରେ ଶିଖାଭଳି ଜଳୁଛି । ଏ ଆକସ୍ମିକ ସାକ୍ଷାତ ପାଇଁ ପ୍ରସ୍ତୁତ ନ ଥିଲା ସେ ।

"ଆରେ ଶିଖା—ତୁମେ···ଏଠାରେ···" ରହି ରହି ପ୍ରଶ୍ନ କଲା ଜୟଦେବ ।

"ଆମ ଗୃହିଣୀ ଜୀବନରେ ଭୁବନେଶ୍ୱର ତ ଆମପାଇଁ ମନ୍ଦିର । Transfer ପାଇଁ, ତମେ ଯେତେବେଳେ ଏମ୍. ଏଲ୍. ଏ. ଥିଲ, ଆସିଥିଲ । ଦୂରରୁ ରହି ଚିଠି ଲେଖିଥିଲ, ହେଲେ ତମେତ ଆଦର୍ଶ ଗାଇଲ । ଏସବୁ ତ ତୁମପାଇଁ Pretty matter ଥିଲା, ଆଉ ତୁମେ ମୋପାଇଁ ବି ଏତକ କଲ ନାହିଁ । ଯାହା ହେଉ ତୁମର ପ୍ରତିଦ୍ୱନ୍ଦୀ ମୋତେ ସାହାଯ୍ୟ କଲେ, ଅବଶ୍ୟ ଏଥିପାଇଁ କିଛି ଆର୍ଥିକ ପୀଡ଼ନ ମୋତେ ସହିବାକୁ ହେଲା, କିନ୍ତୁ Transfer ହୋଇଗଲା···"

କାହା ମୁହଁ ଚାହିଁଥିଲା କେଜାଣି, ପୁଣି ସକାଳୁ ସକାଳୁ ଏକ ତୀକ୍ଷ୍ଣ ଅସ୍ତ୍ରର ଆଘାତ ପାଇଲା ଜୟଦେବ । ଶିଖା ଅତୀତ ଜୀବନର ପ୍ରଣୟିନୀ, ଦୁହେଁ ବହୁବାଟ ଆଗେଇ ଯାଇଥିଲେ ଏ କ୍ଷେତ୍ରରେ, ବିବାହର ସଂକଳ୍ପ ମଧ୍ୟ କରିସାରି ଥିଲେ । ମାତ୍ର କେତେକ ଅହେତୁକ କାରଣ ହେତୁ ଦୁହିଁଙ୍କର ବିବାହ ହୋଇପାରି ନ ଥିଲା । ଶିଖା ଏବେ ବି ହୁଏ ତ ଅବିବାହିତା ଅଛି । ଆଜି ସେହି ଶିଖା ମୁହଁରେ ଶ୍ଳେଷପୂର୍ଣ୍ଣ କଥା । ଜୟଦେବର ପ୍ରତିଦ୍ୱନ୍ଦୀ ଦ୍ୱାରା ତାର କିଛି ଉପକାର ହେଲା କିନ୍ତୁ ଜୟଦେବ ତା ପାଇଁ କିଛି କରିପାରିଲା ନାହିଁ । ମିଛ ଆଦର୍ଶର ଦୋହି ଦେଇ ଶିଖାକୁ ବି ନିରାଶ କରି ଫେରାଇ ଦେଇଥିଲା । ସତରେ କ'ଣ ଜୟଦେବ ମିଛ ଆଦର୍ଶର ଦୋହି ଦେଇ ଶିଖାକୁ ହତାଶ କରିଥିଲା । ସତରେ କ'ଣ ସେ କୌଣସି Transfer postingରେ ହାତ ଦେଇ ନ ଥିଲା । ନା—ସବୁ ହେଉଥିଲା କିନ୍ତୁ ଶିଖାଠାରୁ ଦୂରେଇ ରହିବା ପାଇଁ ଶିଖାକୁ ପାଖକୁ ଆଣିବାକୁ ଚାହୁଁ ନ ଥିଲା ସେ । ନିଜର ସୁନାମ ପାଇଁ ନିଜର ଅତି ଆପଣାର ଲୋକଙ୍କୁ ବି ପ୍ରତାରିତ କରିଥିଲା ସେ । ଆଉ, ଆଜି ଯଦି ତାର ପ୍ରତିଦ୍ୱନ୍ଦୀ ଅରବିନ୍ଦ ଦାସ ଶିଖାକୁ ସାହାଯ୍ୟ କଲା, ଏଥିରେ ଜୟଦେବ ମନ ଏପରି ବିଷାକ୍ତ ହୋଇ ଉଠୁଛି କାହିଁକି ? କାହିଁକି ତା ପ୍ରାଣରେ ଦୁଃଖର ଆଲୋଡ଼ନ ଉଠୁଛି ? କାହିଁକି ଅନ୍ଧ ଦୁହିଁହୋଇ ତୁହାକୁ କୁହା କୋହ ଉଠୁଛି ? ତେବେ ଏତେ ଦିନର, ତା ସ୍ତ୍ରୀ ସହିତ ନିବିଡ଼ ସମ୍ପର୍କ ରହିବା ଭିତରେ ବି ଏ 'ଶିଖା' କ'ଣ ପୂର୍ବପରି ସ୍ଥାନ ଅଧିକାର କରି ବସିଛି । ନିଜେ ଜୟଦେବ ଆନନ୍ଦରେ ତା ସଂସାର ନେଇ ବ୍ୟସ୍ତ, ହେଲେବି ଶିଖାର ବିବାହ କଥା ଚିନ୍ତା କଲେ ତା ପ୍ରାଣରେ କୋହ ଉଠେ । ସେ କାହାର ନ ହୋଇ ଦୂରରେ

କେବଳ ଜୟନ୍ତଦେବର ହୋଇ ରହୁ, ଏହା ହିଁ ବୋଧେ ପ୍ରତ୍ୟେକ ପ୍ରେମିକର ଇଚ୍ଛା । କିନ୍ତୁ ନିଜେ ପ୍ରେମିକ ପ୍ରବର ଜୟନ୍ତଦେବ ତାଠାରୁ ଦୂରରେ ରହିବାକୁ ଚାହେଁ । କେଜାଣି କିଛି କହିହେବାର ଭୟରେ, ଆଃ—ଚାରିପାଖର ସଂସାର ପ୍ରତି ତା ମନରେ ଯଦି କିଛି ଭୟ ନ ଥାନ୍ତା ଅନ୍ୟମାନଙ୍କ ଭଳି ।

"ଆରେ ଦେବ ଭାଇ, ତମେ ଏପରି ଗମ୍ଭୀର ହୋଇଗଲ ଯେ··· ମୁଁ ତୁମ ପଥରେ କଣ୍ଟା ହେବାକୁ ଆଉ ଆସିବି ନାହିଁ ମ । ତମେ ଜାଣ, ଆରବର୍ଷ ମୋର ବିବାହ ସରିଯାଇଛି ମାନବେଶ ସହିତ ।"

"ଆଃ ! ଜୟନ୍ତଦେବଙ୍କୁ କିଏ ଯେପରି ଖଣ୍ଡାରେ ନେଇ ଆଘାତ କଲା । ଛାତି ଦୁହିଁ ହୋଇ କୋହ ଉଠି ଆସୁଥିଲା । ଆଖିପତା ଡେଇଁ ଲୁହ କେଇଟୋପା ତଳକୁ ଗଡ଼ିଆସୁଥିଲା । ନିଜର ମନୋଭାବ ଲୁଚେଇବା ପାଇଁ ଖୁବ୍ ଦ୍ରୁତଗତିରେ ପଳେଇଲା ଜୟନ୍ତଦେବ । ପଛରୁ ଶିଖା ମହାନ୍ତିର କଣ୍ଠସ୍ୱର ଶୁଭୁଥିଲା । ଶୁଣ ଦେବଭାଇ ! ଆରେ ଶୁଣ, ଅନେକ କଥା ଅଛି ତୁମ ସହିତ, ଦେବଭାଇ !

ମାତ୍ର ଜୟନ୍ତଦେବ ଯେତେଦୂର ସମ୍ଭବ ନିଜକୁ ଶିଖାଠାରୁ ଦୂରକୁ ନେଇଯିବାକୁ ଚେଷ୍ଟାକରି ଏକ ପ୍ରକାର ଦୌଡ଼ୁଥାଏ । ସତରେ ଆଜି ତା ପକ୍ଷରେ ଏକ ଭୟଙ୍କର ଅଶୁଭ ଦିନ । ଆଜ୍ଞା ରାଜନୀତି କଲା ସେ । କ୍ରମଶଃ ତା ଜୀବନରୁ ଯେପରି ସବୁକିଛି ହରେଇ ବସୁଛି ସେ । ସ୍ତ୍ରୀ, ମା', ଭାଇ, ଭାଉଜ, ବନ୍ଧୁବାନ୍ଧବ, ପିଲାଏ, ପ୍ରେମିକା, ସବାପରି ଶେଷରେ ତା ଉପରେ ମାନଅଭିମାନ କରି ଦୂରେଇ ଯାଉଛନ୍ତି ଜୟନ୍ତଦେବ ପାଖରୁ ।

ସ୍ତ୍ରୀର ଅଭିଯୋଗ ଚାକିରି ଛାଡ଼ି ତୁମ ନିଜର ଭବିଷ୍ୟତ ତ ନଷ୍ଟକଲ, ତା ସହିତ ପିଲାଙ୍କ ଭବିଷ୍ୟତ ବି ସାରିଲ । ଭାଇ ଭାଉଜଙ୍କର ଅଭିଯୋଗ, ରାଜନୀତି କରି ଏତେଲୋକ ଏତେକଥା କରିଗଲେ ଆଉ ଏ କ'ଣ କିଛି କରିପାରିଲା ନାହିଁ । ପିଲାମାନଙ୍କ ଅଭିଯୋଗ, ଏତେ ଅଳ୍ପ ପାଠପଢ଼ି ଏତେ ଲୋକ ମନ୍ତ୍ରୀ ହେଲେ ଆଉ ଜୟନ୍ତଦେବ ବୋକା Obedient ସାଜି କିଛି ହୋଇ ପାରିଲାନାହିଁ । ବନ୍ଧୁବାନ୍ଧବମାନଙ୍କ ହୋଇଛି, ଶଳା ଗାଡ଼ିଚଢ଼ି ବୁଲିଲା, କେତେ କ'ଣ ନିଜର କରିଥିବ, ଆଉ ଆମ ପାଇଁ କିଛି କଲାନି । ଶେଷରେ

ମାନଙ୍କର ସବୁଦିନଆ ଅଭିଯୋଗ ଆମର କିଛି ହୋଇପାରିଲା ନାହିଁ । ଆଉ ପ୍ରେମିକା ସବୁଥିରୁ ହତାଶ ହୋଇ ଶେଷରେ ତା'ର ଅଜୀବନ ଶତ୍ରୁମାନଙ୍କୁ ବିବାହ କଲା । ଅଶ୍ରୁ ନୁହେଁ ଜୟଦେବର ଆଖିରୁ ଟୋପା ଟୋପା ବ୍ୟଥାଦାୟକ ଅଶ୍ରୁ ନିଗିଡ଼ି ପଡ଼ୁଥିଲା । କାହିଁ କେହିତ ଆଜି ତା' ଆଖିରୁ ଲୁହ ପୋଛିବାକୁ ଆସୁନାହାନ୍ତି । ଲୁହର ଆଧିକ୍ୟହେତୁ ସବୁକିଛି ତାକୁ ଝାପ୍‌ସା ଝାପ୍‌ସା ଦେଖାଯାଉଥିଲା ।

ସେଦିନର କଥା ମନେପଡ଼ୁଛି ଜୟଦେବର । ଝିଅର ହଷ୍ଟେଲ ଟଙ୍କା ପଠା'ଇବା ପାଇଁ ସେ ବ୍ୟସ୍ତ ହୋଇ ପଡ଼ିଥାଏ । ବୋଉ ଆସି ଛିଡ଼ାହେଲା ପାଖରେ । ଅତି ସ୍ନେହରେ ଜୟଦେବ ମୁଣ୍ଡରେ ହାତବୁଲେଇ ସ୍ନେହଭିଜା କଣ୍ଠରେ କହିଥିଲା, "ଆରେ ତୁ କ'ଣ ସତରେ କିଛି ରଖିନୁ ପାଖରେ ? ବଇଁଶୀ କିଛି ପାଠ ନପଢ଼ି ଏମ୍. ଏଲ୍. ଏ. ହୋଇଥିଲା ସେ କେତେ ଟଙ୍କା ରଖିଛି ତୁ କ'ଣ ଜାଣିନୁ । ଘରକଲା, ଝିଅ ବାହାଘରରେ ୫୦ ହଜାର ଟଙ୍କା ଖର୍ଚ୍ଚକଲା, ୫ ଏକରର ଜମି କିଣିଲା । ଏବେ ବ୍ୟବସାୟ କରୁଛି । ଆଉ ତୁ ତୋ ଝିଅ ପଢ଼ିବା ପାଇଁ ବି ପଇସା ନାହିଁ ତୋ ପାଖରେ । ସତରେ ତୁ ବୋକାଟାଏ ।

ସେଦିନ ଏକୁଟିଆ ଘରେ ଶୋଇ ଅନେକ ସମୟଯାଏ କାନ୍ଦିଥିଲା ଜୟଦେବ । ଏ ଯୁଗର ଏ ତୀବ୍ର ପ୍ରତିଯୋଗିତାରେ ସେ ହାରିଯାଇଛି । ଅତି ଦୟନୀୟ ଭାବରେ ହାରିଯା'ଇଛି । ନିଜ କଥା କାହାକୁ କହିହେଉନି । ନକହି ସମୟ ସମୟେ ବି ରହି ହେଉନି । କାହାକୁ ସତରେ କହିବ ସେ ଏ କଥା—କିଏ ବିଶ୍ୱାସ କରିବ ତାକୁ । ମୁଖ୍ୟମନ୍ତ୍ରୀଙ୍କ ନିଜ ଲୋକଥିଲା ସେ, ମୁଖ୍ୟମନ୍ତ୍ରୀଙ୍କ ପିଲାଏ ତାଙ୍କୁ ଖୁବ୍ ମାନୁଥିଲେ, ତେବେ ସେ କ'ଣ କିଛି ରଖିନି । ନିଶ୍ଚୟ କିଛି ପୋତାମାଲ ରଖିଥିବ । କେତେ କଥା କେତେ ଲୋକଙ୍କ ମୁହଁରେ । ସବୁ ଶୁଣେ ଜୟଦେବ । ବେଳେ ବେଳେ କିଛି ନ ଶୁଣିଲା ଭଳି ରହେ ଆଉ ବେଳେ ବେଳେ ମନ ଦୁଃଖରେ କାନ୍ଦେ । ସେ ସତରେ କ'ଣ କରିଛି କାହାପାଇଁ । ନିଜ ପାଇଁ ଯେ କିଛି କରି ପାରେନା, ସେ ଅନ୍ୟର କ'ଣ କରିପାରିବ ?

ସତରେ କ'ଣ କହିବ ସେ କାହାଁକୁ ?

ଛିଣ୍ଡା ହାଓ୍ୱାଇ ଚପଲ ଘୋଷାର ଘୋଷାର ଭ୍ରାବକାନ୍ତ ମନରେ ଗ୍ଳଲଥିଲା ଜୟଦେବ । ମନେ ମନେ ନିଜକୁ ଧିକ୍‌କାର କରୁଥିଲା ସେ, ଆଉ କେଉଁ ବାହାଘର ପାଇଁ ମାଇକ୍ ଠିକ୍ ସେଣ୍ଟିକବେଲକୁ ଗାଉଥିଲା, "ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡ଼ାଇବ ହେ···"

ସବୁ ମିଳି ସତେକି ଜୟଦେବକୁ ଆଜି ଆକ୍ରମଣ କରୁଥିଲେ । ଆଉ ଜୟଦେବ କ୍ରୋଧ, ଅଭିମାନ ଆଉ ଅନୁଶୋଚନାରେ ଗ୍ଳଲୁ ନଥିଲା । ଏକ ପ୍ରକାର ଏ ସବୁଥିରୁ ଦୂରେଇ ରହିବାକୁ ଦୌଡ଼ୁଥିଲା ।



# ଦହନ

ସେଦିନ କଲେଜ କମନ୍ ରୁମ୍ ପୁରାପୂରି ଛାତ୍ରଛାତ୍ରୀଙ୍କ ଦ୍ୱାରା ଭରପୂର ହୋଇଛି । ଏକ ଦିଗରେ ଛାତ୍ରମାନଙ୍କର କମେଣ୍ଟ୍ ଆସୁଥାଏ ଛାତ୍ରୀମାନଙ୍କ ପ୍ରତି ଆଉ ଛାତ୍ରୀମାନେ ଆଜିକାଲି କୋଉ କମ୍‌ରେ ଅଛନ୍ତି ଯେ ଛାଡ଼ିବେ । ସେମାନଙ୍କ ପକ୍ଷରୁ ବି ଅନୁରୂପ ଟିପ୍‌ପଣୀ ଶୁଣାଯାଉ ଥାଏ । ଛାତ୍ରଛାତ୍ରୀଙ୍କ ମଧ୍ୟରେ ଆଜି ସଙ୍ଗୀତ ପ୍ରତିଯୋଗିତା ହେବ । ଏ ନେଇ ଏ ବିରାଟ ଆସର । ଛାତ୍ରୀମାନଙ୍କ ପକ୍ଷରୁ ବେତାର ଶିଳ୍ପୀ, କଲେଜ କୁଇନ୍ ମଧୁମିତା ମହାନ୍ତି ଅଂଶ ଗ୍ରହଣ କରୁଥିବାରୁ ଛାତ୍ରୀମାନେ ସ୍ଥିର ନିଶ୍ଚିତ ଯେ ସେମାନେ ବିଜୟୀ ନିଶ୍ଚୟ ହେବେ । ମାତ୍ର ଏପଟେ ଛାତ୍ରମାନଙ୍କ କ୍ୟାମ୍ପରେ ସତରେ ହତାଶାର ଚିହ୍ନ ସୁସ୍ପଷ୍ଟ । ତେଣୁ ନିଜର ମନୋଭାବକୁ ଲୁଚେଇବା ପାଇଁ ନିଜ ନିଜ ମଧ୍ୟରେ ଲଘୁ ପରିହାସ ଆଳରେ ଛାତ୍ରୀମାନଙ୍କୁ କମେଣ୍ଟ୍ ପରେ କମେଣ୍ଟ୍ ଦେଇ ଚାଲିଛନ୍ତି ସେମାନେ ।

କଲେଜର ସମସ୍ତଙ୍କଠାରୁ ନାମ୍‌ଜାଦା ଦାଦା ନିର୍ବେଦ ଖୁବ୍ ବଡ଼ ପାଟିରେ ଚାଟିକରି କହିଉଠିଲା, "ଆଉ ଡର କାହିଁକି ? ଆମ ଲତାମୁଙ୍ଗେସ୍‌କର ଆଜି ହେମମାଳିନୀର ମିଳିତ ଅବତାର ଶ୍ରୀମତୀ ସର୍ବ ସାର୍ ମିସ୍ ମଧୁମିତାଙ୍କ କଣ୍ଠରୁ ସଙ୍ଗୀତର କଲରୋଳ ନିଃସୃତ ହେବାକୁ ନିର୍ଦ୍ଦେଶ ଅଛି । ଆମେ ସବୁ ତାଙ୍କ ସଙ୍ଗୀତ ସୁଧାକୁ ଢକ ଢକ କରି ଦି ତିନ ପେଗ୍ ଉଦରସ୍ଥ କରିଯାଉ···

ଖୁବ୍ ଜୋର୍‌ରେ ହାସ୍ୟରୋଳ ସୃଷ୍ଟି ହେଲା ଛାତ୍ରମାନଙ୍କ ମଧ୍ୟରେ । ଧନୀ ଦୁଲାଳୀ ମଧୁମିତା, ଖୁବ୍ ରୂପସୀ ବୋଲି ତାର ଖୁବ୍ ଗର୍ବ । ସାଧାରଣ

ପିଲାଙ୍କ ସହିତ କଥାବାର୍ତ୍ତା କରିବାକୁ ସେ ଘୃଣା କରେ । ଗାଡ଼ିରେ ଆସେ, ଗାଡ଼ିରେ ଯାଏ, ଏଉ଼କେଟନ୍ ଯେ କେଟାଗଙ୍କ ଝିଅ ସେ । ତେଣୁ କଲେଜର ଅଧ୍ୟାପକ ଏପରିକ ଅଧ୍ୟକ୍ଷଙ୍କ ପର୍ଯ୍ୟନ୍ତ ମଧୁମିତାର ସହଯୋଗ କାମନା କରନ୍ତି । ତେଣୁ ସେ ଏ ନ୍ୟାଷ୍ଟି ଗ୍ରାସଗ୍ରସୀଙ୍କ ସହିତ କଥାବାର୍ତ୍ତା କରିବାକୁ ଘୃଣା କରିବା ସ୍ୱାଭାବିକ । କେତେକ ବି ତା ଠାରୁ ପଦେ କଥା ଶୁଣିବାକୁ ସୌଭାଗ୍ୟ ବୋଲି ମନେକରନ୍ତି ।

ଆଜି ନିର୍ବେଦର ଏ କମେଣ୍ଟ୍ ଶୁଣି ମନେ ମନେ ରାଗି ମୁହଁ ତାର ଲାଲ ପଡ଼ିଗଲା । ଇଡ଼ିଅଟ୍‌କୁ କଲେଜରୁ ନିକାଲି ଦେବାକୁ ପଡ଼ିବ, କ'ଣ ଭାବନ୍ତିକ ସେ । ଅନ୍ୟ କେତେକ ଛାତ୍ରୀ ତା କାନ ପାଖରେ ନିର୍ବେଦ ବିରୁଦ୍ଧରେ କିଛି କହି ମଧୁମିତାକୁ ଉତ୍ତେଜିତ କରିବାକୁ ଚାହିଁଲେ ।

ଖୁବ୍ ଉଦ୍ଧତ ଝିଅ ମହାମାୟୀ । ନିର୍ବେଦକୁ ଜବାବ୍ ଦେବାକୁ ଯାଇଁ ସେ ବି ଖୁବ୍ ବଡ଼ପାଟିରେ କହିଲା, "ମଧୁମିତା ତ ମଧୁ ଚଖେଇବ । ତେବେ ଏ ମର୍କଟମାନଙ୍କ ମଧ୍ୟରୁ କିଏ ମୁକ୍ତାମାଳ ପିନ୍ଧି ଗଧ ରଡ଼ି ଶୁଣେଇବ ଆମେ ଠିକେ ଜାଣିଲେ ଖୁସି ହେବୁ ମହାଭାଗ ।"

ଝିଅମାନଙ୍କ ମଧ୍ୟରେ ଯେତିକି ହସର ଝରଣା ପାହାଡ଼ ଉପରୁ ଝର ଝର ହୋଇ ତଳକୁ ଖସିପଡ଼ିଲା । ନିର୍ବେଦ ଚାହିଁଲା ଛାତ୍ରମାନଙ୍କ ଆଡ଼କୁ, କପରି ଅସହାୟ ଭାବରେ ସେ ଚାହିଁଲା । ସତରେ କିଏ ମଧୁମିତା ସହିତ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହେବ । ମଧୁମଙ୍ଗଳ—ହଁ—ହଁ—ମଧୁମଙ୍ଗଳକୁ ହିଁ ଆଜି ଏଠାରେ ସୁଯୋଗ ଦିଆଯିବ, ନାଁ ସହିତ ମେଳ ଅଛି । ମଧୁମିତା—ମଧୁମଙ୍ଗଳ—କଲେଜର କୃତିଛାତ୍ର—ଏବେ Transfer ହୋଇ ଆସିଛି ମଫସଲ କଲେଜରୁ । ପୂରା ଚୂଡ଼ାଟାଏ, କିଛି ନ ହେଲେ ବି ମଧୁମଙ୍ଗଳ ଭଳି ଗୋଟାଏ ନିପଟ ମଫସଲି ସହିତ ପ୍ରତିଯୋଗିତା କଲେ ମଧୁମିତାକୁ ଲାଜଲାଗିବ ତ । ଇଉରେକା, ନିଜ ଚିନ୍ତାରେ ନିଜେ ଉଲୁସି ଉଠିଲା ନିର୍ବେଦ । ଶଳା ଏକା ମାଡ଼କେ ତବଲ ଶିକାର । ମଫସଲି ମଧୁମଙ୍ଗଳ ଶେଷ ଆଉ କଲେଜ କୁଇନ୍ ଦେବୀ ମଧୁମିତା କାବାର । ଗୀତ ତ ଯାହା ହେବ ଜଣା ଅଛି । First prise ନିଶ୍ଚୟ ମଧୁମିତାର, ଆଉ ମଧୁମଙ୍ଗଳ ଗୀତ ଶୁଣି ଆମେ ସବୁ ଆମୋଦିତ ହେବୁ ତ ।

ଗ୍ରୁପମାନଙ୍କ ଆଡ଼କୁ ସତର୍କରେ ଚାହିଁ ହସିଲା ନବୋଦ । ତା ପରେ ଔର୍ଧ୍ୟକ ଚାହାଁଣୀ ହାଣିଲା ଗ୍ରୁପୀମାନଙ୍କ ଆଡ଼େ । "ହିଅର—ହିଅର— ଆପଣମାନେ ଆଜିର ଏ ବନୋତ୍ସବରେ ମନ୍ତ୍ରପୁରୀ ଲଳିତା ଦେବୀଙ୍କର ବେଙ୍ଗଲା ସ୍ୱରଲହର ଶୁଣି ନିଶ୍ଚୟ ଆମୋଦିତ ହୋଇଥିବେ । ସେ ଜାଣିବାକୁ ଚାହାଁଛନ୍ତି ଆଜିର ଏ ପ୍ରତିଯୋଗିତାରେ ଆମ ଗ୍ରୁପମାନଙ୍କ ପକ୍ଷରୁ କିଏ ଭାଗ ନେବେ ? ଅନେକ ତ ଅଛନ୍ତି, ତେବେ ମୁଖ୍ୟ ସ୍ଥାନରେ ଅଛନ୍ତି ଓଡ଼ିଶାର ପ୍ରଖ୍ୟାତ ସଙ୍ଗୀତ ଶିଳ୍ପୀ ଶ୍ରୀମାନ୍ ମଧୁମଙ୍ଗଳ ଦାସ । ଆସ ବନ୍ଧୁ ମଧୁମଙ୍ଗଳ, ମଞ୍ଚ ଉପରକୁ ଆସ···

ଗ୍ରୁପଗ୍ରୁପୀଙ୍କ ମଧ୍ୟରେ ପୁଣି ଏକ ଗୁଞ୍ଜରଣ ସୃଷ୍ଟି ହେଲା । କିଏ ଏହି ମଧୁମଙ୍ଗଳ, ବିଶେଷ ଜଣାଶୁଣା ନୁହଁନ୍ତି ତ କଲେଜରେ । ଗ୍ରୁପୀମାନେ ଚାହିଁଲେ ଗ୍ରୁପମାନଙ୍କୁ, କିଏ ଏ ମଧୁମଙ୍ଗଳ ! ଆଉ ମଧୁମଙ୍ଗଳ । ସତେକି ଏକ ଆକସ୍ମିକ ବିସ୍ଫୋରଣ ଘଟିଲା ତା ଭିତରେ । କି ସଙ୍ଗୀତ ଅବା ସେ ଜାଣେ, ଏ କ'ଣ କଲା ନବୋଦ ।

ମଧୁମିତା ମଞ୍ଚ ଉପରକୁ ଉଠିଗଲାଣି । ଆଖିରେ ତାର ମତ୍ତ ହସ୍ତିନୀର ଗର୍ବ । ଏ କଲେଜରେ ଏପରି କେହି ନାହିଁ ଯେ'କି ତା ସହିତ ପ୍ରତିଯୋଗିତାରେ ପାରିଉଠିବ । ଆଉ ମଧୁମଙ୍ଗଳ, କେଉଁଠିକାର ଅର୍ବାଚୀନ କିଏ, ସେ ପୁଣି ତା ସହିତ ପ୍ରତିଯୋଗିତା କରିବ ? ମନେ ମନେ ଅବଜ୍ଞାର ହସ ହସିଲା ସେ । ଆଉ ନବୋଦ ଭିଡ଼ ଠେଲି ପଛକୁ ଚାଲିଲା ମଧୁମଙ୍ଗଳକୁ ପ୍ରତିଯୋଗିତାରେ ଭାଗ ନେବା ପାଇଁ ପ୍ରବର୍ତ୍ତାଇବା ପାଇଁ ।

ଦର୍ଶନ ବିଭାଗର ପ୍ରଫେସର ଜଜ୍ ସ୍ଥାନରେ ବସି ଚାହୁଁଥିଲେ ଗ୍ରୁପମାନଙ୍କ ଆଡ଼କୁ । କାହାକି ସେମାନଙ୍କର ପ୍ରତିନିଧି, ହୁଏ ତ ବିଳମ୍ବ ହୋଇପାରେ । ତେଣୁ ସେ ମଧୁମିତାକୁ ସଙ୍ଗୀତ ଆରମ୍ଭ କରିବାକୁ ଆହ୍ୱାନ ଦେଲେ ଆଉ ମଧୁମିତା—ସତରେ ଅନବଦ୍ୟତାର ସଙ୍ଗୀତ ସାଧନା, କଣ୍ଠରେ ତାର ଶତ କୋକିଳର କୁହୁତାନ । ଛଳରେ ତାର ଅପୂର୍ବ ରାଗିଣୀ । ମୁଗ୍‌ଧ ଚକିତ ହେଲେ ସମସ୍ତ ଶ୍ରୋତା, ଗ୍ରୁପମାନଙ୍କ ମଧ୍ୟରେ ଗଭୀର ନୈରାଶ୍ୟ ଖେଳିଗଲା । ନିଶ୍ଚୟ ଏଥର ଗ୍ରୁପୀମାନେ ବାଜି ମାରିନେବେ, ଆଉ ମଧୁମିତା ନିଜେ ଗର୍ବ ଆଉ ଅହଙ୍କାରରେ

ଫାଟିପଡ଼ୁଥିଲା । ଛାତ୍ରୀମାନେ ଉଚ୍ଛ୍ୱସିତ କରତାଳି ଧ୍ୱନିରେ ମଧୁମିତା ପାଦର ଗତିକୁ ତରଙ୍ଗାୟିତ କରୁଥିଲେ ସତେକି । ମଞ୍ଚରୁ ମତ୍ତଗନ୍ଧରେ ଓହ୍ଲାଇ ଆସୁଥିଲା ମଧୁମିତା ଆଉ ଚେତନାକୁ ଅର୍ଗଳୀ ଭିତରକୁ ଟାଣି ଟାଣି ନେବା ଭଳି ମଧୁମଙ୍ଗଳକୁ ଟାଣି ଟାଣି ଉପରକୁ ଆଣୁଥିଲା ନିର୍ବେଦ ।

ମଞ୍ଚଉପରୁ ସମସ୍ତଙ୍କୁ ଚାହିଁ କପଟ ଆଶ୍ୱସ୍ତି ଅନୁଭବ କଲା ମଧୁମଙ୍ଗଳ । ଆଉ ମଧୁମଙ୍ଗଳର ବେଶ ପୋଷାକ ଲାଜ ଲାଜ ଭାବ ଦେଖି ହୋ ହୋ ହୋଇ ହସି ଉଠିଲେ ଛାତ୍ରୀମାନେ ।

"ଇମା, ଏ କିଏବା । ଏ ପୁଣି ଗୀତ ଗାଇବ ?" ଟିପ୍ପଣୀ କଲା ମନଜା ।

"ଇଏ ପରା କୃଷ୍ଣ ସଖା ମଧୁମଙ୍ଗଳ । ଯାଙ୍କ ମୁହଁକୁ ଦେଖ । ବେଶପୋଷାକ ଦେଖ । ଚାଲିକୁ ଦେଖ, ଆଃ ବିଗୁବା—ମନ୍ତବ୍ୟ ଦେଲା ଅନ୍ୟ ଜଣେ ଛାତ୍ରୀ ବିମଳା ।

ସଙ୍ଗୀତ ଆରମ୍ଭ କରିବାକୁ ଆଦେଶ ଦେଲେ ବିଚାରକ । ଚଷମା ଫାଙ୍କରେ ମଧୁମଙ୍ଗଳର ଦୟନୀୟ ଅବସ୍ଥା ଦେଖି ସେ ବି ହସିଦେଲେ ଅଳ୍ପ । ବଡ଼ ଅସହାୟ ଭାବରେ ଚାହିଁଲା ମଧୁମଙ୍ଗଳ ନିର୍ବେଦକୁ ଆଉ ନିର୍ବେଦ ତାଙ୍କୁ ଉତ୍ସାହିତ କରିବା ପାଇଁ କହି ଉଠିଲା, ଆପଣମାନେ ହୁଏତ ଜାଣନ୍ତି ନାହିଁ ମଧୁମଙ୍ଗଳକୁ । ସେ ଏକାଧାରରେ ଜଣେ ସୁଲେଖକ, ସୁବକ୍ତା ଏବଂ ବିଶ୍ୱବିଦ୍ୟାଳୟର କୃତୀଛାତ୍ର । ତାଙ୍କର ସଙ୍ଗୀତ ସାଧନା ମଧ୍ୟ ଅପୂର୍ବ । ଏଇ ଅଳ୍ପଦିନ ହେବ । ସେ ଏକ ମଫସଲ କଲେଜରୁ ଆମ କଲେଜକୁ ଆସିଛନ୍ତି । ଆପଣ ମଧୁମିତା ଦେବୀଙ୍କ ସଙ୍ଗୀତ ଶୁଣିଛନ୍ତି । ପ୍ରଶଂସା କରିଛନ୍ତି, ଏବେ ଶୁଣନ୍ତୁ ମଧୁମଙ୍ଗଳ ଦାସଙ୍କ ସଙ୍ଗୀତ । ମଧୁମଙ୍ଗଳ ଦାସ··· ।

ଛାତ୍ରମାନଙ୍କ ମଧ୍ୟରୁ 'ଜୟ ମଧୁମଙ୍ଗଳ' ଧ୍ୱନି ଶୁଣାଗଲା । ପଛରୁ ନିର୍ବେଦ ବି ଚିମୁଟି ଦେଲା ମଧୁମଙ୍ଗଳକୁ । ବିଚରା ଅନନ୍ୟୋପାୟ ହୋଇ ଆରମ୍ଭକଲା ସଙ୍ଗୀତ । ଏକ ପୁରାତନ ଛାନ୍ଦ । ବନ୍ଧୁ ମାୟାବୀ ଜୀବ ନୁହେଁ କାହାର । ପ୍ରଥମେ ସମସ୍ତେ ହସରେ ଉଡ଼େଇ ଦେଲେ ତାଙ୍କୁ । ନିଜେ ନିର୍ବେଦ ପାଟିରୁ ବାହାରି ପଡ଼ିଲା, "ଶଳା ମାଟି କରିଦେଲା ।"

ମାତ୍ର କ୍ରମଶଃ ମଧୂମଙ୍ଗଳର ସୁଲଳିତ କଣ୍ଠସ୍ୱର ସମଗ୍ର ହଲ୍‌ଟିରେ ଯାଦୁ ସୃଷ୍ଟିକଲା ସତେକି । ସେଇ ମାନ୍ଧାତା ଅମଳର ସେହି ଗୀତଟି ମଧୂମଙ୍ଗଳ କଣ୍ଠରେ ସତେକି ଏକ ନୂତନ ଶିହରଣ ସୃଷ୍ଟି କଲା ସମସ୍ତଙ୍କର ପ୍ରାଣରେ । ଛାତ୍ରମାନେ ସଙ୍ଗୀତର ତାଳେ ତାଳେ ତାଳିମାରି ହଲ୍‌ଟିକୁ ମୁଖରିତ କଲେ । କେତେକ ମଧୂମଙ୍ଗଳ ସହ କଣ୍ଠ ମିଶାଇ ପାଳି ଧରିବା ବି ଆରମ୍ଭ କଲେ । ଚଷମା ଫାଙ୍କରେ ବିଚାରକ ବିସ୍ମିତ ଦୃଷ୍ଟିରେ ଚାହିଁଲେ ମଧୂମଙ୍ଗଳକୁ । ଆଉ କେତେଜଣ ମଞ୍ଚ ଉପରେ ତାଳ ଦେଇ ନାଚିବାକୁ ଆରମ୍ଭ କରିଦେଲେ । ସତରେ କ'ଣ ଗାଉଛନ୍ତି ମଧୂମଙ୍ଗଳ— କି କଣ୍ଠ କି ତାଳ । ଯେଉଁ ଛାତ୍ରୀମାନେ ହସରେ ଉଡ଼େଇ ଦେଉଥିଲେ ମଧୂମଙ୍ଗଳକୁ ସେହିମାନେ ଚାହିଁଲେ ବିସ୍ମୟ ବିସ୍ଫାରିତ ଆଖିରେ । ନା, ଜିତାପଟ ନିଶ୍ଚୟ ମଧୂମଙ୍ଗଳର । ମଧୂମିତା ଆଖିରେ ବି ବିସ୍ମୟ ।

ସଙ୍ଗୀତ ଆସର ପରେ ଫଳ ଘୋଷଣା କଲେ ବିଚାରକ । ବିଜୟୀ ମଧୂମଙ୍ଗଳ । ମଧୂମିତା ନୁହେଁ । କେତେଜଣ ମଞ୍ଚ ଉପରୁ ପାଟିକଲେ, He is my invention 'ଜୟ ମଧୂମଙ୍ଗଳ' ଏକ ପ୍ରକାର ମଧୂମଙ୍ଗଳକୁ ଟେକି ନେଇଗଲେ ସେ । କିଏ କେତେ ପ୍ରକାର କମେଣ୍ଟ୍‌କଲେ ମଧୂମିତାକୁ । ସତେକି ଏତେଦିନର ତାର ସମସ୍ତ ସୁନାମକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିଦେଲା ଏ ମଫସଲ ଟୋକା । ମଧୂମଙ୍ଗଳ ଉପରେ ରାଗରେ ରକ୍ତଗରଳ ଫେରାଉଥିଲା ମଧୂମିତା । ତାର ସାଥୀମାନେ ସମସ୍ତେ ଲାଜ ଅପମାନରେ କିଏ କୁଆଡ଼େ ପଳେଇଲେଣି । ତାକୁ କିନ୍ତୁ ଖୁବ୍ ଅବଶ ଲାଗୁଚି । ଚାଲିବାକୁ ଗୋଡ଼ ଉଠୁନାହିଁ । ହଲ୍ ପ୍ରାୟ ଖାଲି । କେହି ଆଜି ତାକୁ ଘେରି ପ୍ରଶଂସା କରୁନାହାନ୍ତି । ସମସ୍ତେ ସେ ମଫସଲର ଗଧଟାକୁ ନେଇ ଚାଲିଗଲେଣି । ଆହତ ଫଣିନୀଙ୍କ ଭଳି ମନେ ମନେ ଗର୍ଜୁଥିଲା ମଧୂମିତା । ନା, ଏହାର ପ୍ରତିଶୋଧ ନେବାକୁ ହେବ । ବାବାଙ୍କୁ କହି ଇଡ଼ିଅଟ୍ ପ୍ରଫେସରଟାକୁ ତୁରନ୍ତ ବଦଳି କରିବାକୁ ହେବ । ନିଜ ସଂକଳ୍ପରେ ନିଜେ ଉଲ୍ଲସିତ ହୋଇଉଠି ଦ୍ରୁତ ଗତିରେ ଚାଲିଲା ସେ । ହଲର ମୋଡ଼ କାଟିଯିବା ସମୟରେ ହଠାତ୍ କାହା ସହିତ ଧକ୍କା ଲାଗିବାରୁ ଥମକି ଛିଡ଼ାହେଲା ସେ । ଆଗରେ ତାର ମଧୂମଙ୍ଗଳ, ଖରୁ ଆଖି ମେଲି ଚାହିଁଛି । ସତେକି ମଧୂମିତାର ରାଗ କପାଳକୁ ଉଠିଗଲା । ଧଡ଼ାସ୍, ଏକ ଶକ୍ତ ଚାପୁଡ଼ା ବାଜିଲା ମଧୂମଙ୍ଗଳ ଗାଲରେ ।

"You rogue. ଏତେ ସାହସ । ଆଜ ସେ ପ୍ରଫେସରଟାକୁ ହାତକର ଜିତଗଲୁ ବୋଲି ଏତେ ଅହଙ୍କା ।

ଜାଣି ଜାଣି ମୋତେ ଧକ୍କା ମାରୁଛ, ଚାହିଁଛ ମୋତେ···ମୁଣି ହାତ ଟେକୁଥିଲ ତାକୁ ମାରିବାକୁ ମାତ୍ର ମଧୁମଙ୍ଗଳ ଦୃଢ଼ ଭାବରେ ଧରି ପକାଇଲା ତାର ହାତ ।

"ଏ ମିସ୍, ମୁହଁ ସମ୍ଭାଳି କଥାବାର୍ତ୍ତା କର । କାହାକୁ ଅବଜ୍ଞା କରିବା ବା କାହାକୁ ପ୍ରଶଂସା କରିବା ମୋ ଇଚ୍ଛାଧୀନ । ତା ପରେ ଯେଉଁ ଝିଅମାନେ ନିଜକୁ ସ୍ୱର୍ଗର ଅପ୍ସରା ବୋଲି ମନେ କରନ୍ତି, ନିଜ ଶିଷ୍ଟାଗୃର ବିରୋଧୀ କାର୍ଯ୍ୟକୁ ନିଜେ ପ୍ରଶଂସା କରନ୍ତି, ନିଜ ଗୃଲିଚଳଣି, କଥାବାର୍ତ୍ତା ଆଉ ବ୍ୟବହାରରେ ଅହଙ୍କାର ପ୍ରକାଶ କରନ୍ତି ମୁଁ ସେମାନଙ୍କୁ ଘୃଣା କରେ । I hate them, ନିଜେ ଆସି ଧକ୍କାମାରି ଓଲଟି ଅଭିଯୋଗ । ଥରେ କ୍ଷମା ଦେଇଛି ଆଉ ଥରେ ହାତ ଉଠେଇଲେ ହାତ ଭାଙ୍ଗିଦେବ । ଏ ମଫସଲି ଚାଷୀଝିଅ ହାତରେ ପ୍ରଚୁର ଶକ୍ତି ଅଛି ।" ମଧୁମିତାର ହାତଟିକୁ ଜୋରରେ ଗୁଡିଦେଇ ଦ୍ରୁତ ଗତିରେ ଆଗେଇଗଲା ମଧୁମଙ୍ଗଳ । ଥରକ ପାଇଁ ଫେରି ଗୃହିଁଲା ନାହିଁ ମଧୁମିତାକୁ । ବିଗୃରୀ ମଧୁମିତା ରାଗ, ଅଭିମାନ ଆଉ ଲଜ୍ଜାରେ କିଛି ସମୟ ପାଇଁ ସ୍ଥାଣୁ ଭଳିରେ ସେଠାରେ ଠିଆହୋଇ ରହିଲା । ଏ ଦୃଶ୍ୟକୁ ଦେଖି ଆମୋଦ ଅନୁଭବ କରୁଥିବା କେତେକ ଛାତ୍ର ଅତି କଟୁ ମନ୍ତବ୍ୟ ପ୍ରକାଶ କରୁଥିଲେ ଆଉ ମଧୁମିତା ଏକ ଶରାହତ ପକ୍ଷିଣୀଙ୍କ ଭଳି ଧୀରେ ଧୀରେ ନିଜର ଗାଡ଼ି ପାଖକୁ ଯାଉଥିଲା । ଆଖିରୁ ତାର ଝରି ପଡ଼ୁଥିଲା ଅସରା ଅସରା ଲୁହର ବର୍ଷା— ଆଃ—ବିଗୃରୀ···

ସେଦିନ ରାତିରେ କିନ୍ତୁ ଆଦୌ ନିଦ ହେଲା ନାହିଁ ମଧୁମିତାକୁ । ଠିକେ ଆଖି ବୁଜିଲେ ହିଁ ମଧୁମଙ୍ଗଳର ସେତେବେଳର ଗୃହାଣୀ ତା' ମାନସପଟରେ ପ୍ୟାରେଡ୍ କରି ଛୁଟୁଥିଲେ । ପ୍ରଥମେ ପ୍ରଥମେ କପଟ ଘୃଣାରେ ତା ମନ ବିଷାକ୍ତ ହୋଇ ଉଠୁଥିଲା ମଧୁମଙ୍ଗଳ ଉପରେ ମାତ୍ର କ୍ରମଶଃ ଯେପରି ତାର ମନ ଖୋଜି ବୁଲିଲା ମଧୁମଙ୍ଗଳର ମୁହଁକୁ । ଜାଗ୍ରତ ଅବସ୍ଥାରେ ସ୍ମୃତିପଟରୁ ମଧୁମଙ୍ଗଳର ମୁହଁ କାଳେ ଲୁଚିଯିବ, ତେଣୁ

ଆଖି ବୁଜି ମୁହୂର୍ତ୍ତପଟରେ ତାଙ୍କୁ ସବୁ ସମୟରେ ଧରିରଖିବାକୁ ବିଫଳ ଚେଷ୍ଟା କରୁଥିଲା ସେ । ଆଃ, କି ମଧୁର କଣ୍ଠ ମଧୁମଙ୍ଗଳର । ବାରମ୍ବାର ସେହି ହାତଟିକୁ ଅନ୍ୟହାତରେ ସ୍ପର୍ଶକରି ଆମୋଦ ଅନୁଭବ କରୁଥିଲା, ଯେଉଁ ହାତକୁ ମଧୁମଙ୍ଗଳ ଖୁବ୍ ଜୋରରେ ଧରି ରଖିଥିଲା । ଆଃ ପୁରୁଷ ହାତର ପୌରୁଷଭରା ପ୍ରଥମ ସ୍ପର୍ଶର ଶିହରଣ ସତେକି ମଧୁମିତାର ସମଗ୍ର ଶରୀରକୁ ଆବୋରି ରଖିଥିଲା···ନା । ମଧୁମଙ୍ଗଳକୁ ଆପଣାର କରିବାକୁ ହେବ ।

କିନ୍ତୁ ସେଦିନ ନିଜେ ଗାଡ଼ି ଡ୍ରାଇଭ୍ କରି କଲେଜକୁ ଯିବା ସମୟରେ ବାଟରେ ଏକୁଟିଆ ମଧୁମଙ୍ଗଳକୁ ଦେଖି ଅଭିମାନ ତାର ହଠାତ୍ ମୁଣ୍ଡ ଉପରକୁ ଉଠିଯାଇଥିଲା । ଆଗରୁ ମଧୁମଙ୍ଗଳକୁ ଦେଖିଲେ ଅନେକ କିଛି କହିବ ବୋଲି ଭାବିହେଲେ ବି ତା ପାଖରେ ଗାଡ଼ି ଅଟକାଇବାକୁ ବି ତାକୁ ସଙ୍କୋଚ ଲାଗିଲା ବା ନିଜର ଅହଙ୍କାର ତାକୁ ଏକଥା କରିବାକୁ ବାଧାଦେଲା । ମାତ୍ର ଗାଡ଼ି କିଛି ବାଟ ଆଗକୁ ଚାଲିଯିବା ପରେ ତାର ଗୋଡ଼ହାତ ସତେକି ଅବଶ ହୋଇ ପଡ଼ିଲା । ଏକ ଅସମ୍ଭବ ଦ୍ୱନ୍ଦ୍ୱ ଭିତରେ ବିଗୁରି ଛଟପଟ ହେଲା । କିପରି ଏକ ବହିଃନିର୍ଦ୍ଦେଶରେ ଗାଡ଼ି ବ୍ରେକ କଷି ଗାଡ଼ିରୁ ଓହ୍ଲେଲ ମଧୁମଙ୍ଗଳକୁ ନ ଦେଖିଲାଭଳି ତା ଆଗରେ ଗଲା ମଧୁମିତା । ଭାବିଥିଲା ହୁଏତ ମଧୁମଙ୍ଗଳ ତାକୁ ଡାକିବ । ମାତ୍ର ତାକୁ ଦେଖି ନ ଦେଖିଲା ପରି ହୋଇ ଆଗକୁ ମାଡ଼ି ଚାଲିଲା ମଫସଲ ମଧୁମଙ୍ଗଳ । ମନେ ମନେ ଖୁବ୍ ବିରକ୍ତ ହେଲା ମଧୁମିତା । ତା ସଙ୍ଗରେ ପଦେ କଥା କହିବାକୁ କେତେ ପ୍ରତିଯୋଗିତା କରନ୍ତି, ଆଉ ଇଏ ଇଡ଼ିଅଟ୍···ନିଜ ଚିନ୍ତାରୁ ଫେରି ଆଗକୁ ଚାହିଁଲା ବେଳକୁ ମଧୁମଙ୍ଗଳ ଅନେକ ବାଟ ଆଗେଇ ଗଲାଣି । ଅଗତ୍ୟା ଗାଡ଼ିକୁ ଫେରି ଗାଡ଼ି ଷ୍ଟାର୍ଟ କଲା ସେ ।

"ଗାଡ଼ିକୁ ଆସନ୍ତୁ । ଅନେକବାଟ ଅଛି । ହୁଏତ ଆପଣ ଠିକ୍ ସମୟରେ ପହଞ୍ଚି କ୍ଲାସ୍ ଆଟେଣ୍ଡ୍ କରି ପାରିବେନି ।" ମଧୁମିତା ଯେପରି ଆଉ ନିଜ ନିୟନ୍ତ୍ରଣରେ ନାହିଁ ।

ମଧୁମିତାର ମୁହଁକୁ କିପରି ଅବିଶ୍ୱାସ ଢଙ୍ଗିରେ ଚାହିଁଲା ମଧୁମଙ୍ଗଳ । ତା ପରେ ସ୍ମିତ ହସି କହିଲା, No—Thanks । କାହା ସହ ବିଶେଷକରି

ବଡ଼ଲୋକ ଝିଅମାନଙ୍କ ସଙ୍ଗ ଗାଡ଼ିରେ ବସି ଯିବାଭଳି ଯୋଗ୍ୟତା ଆମର ନାହିଁ । ମୁଁ ଠିକ୍ ସମୟରେ କଲେଜରେ ପହଞ୍ଚିବ । ମଧୁମିତାର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି, ତା'ଠାରୁ ଆଉ କିଛି ଶୁଣିବାକୁ ଅପେକ୍ଷା ନ କରି ଆଗେଇଗଲେ ମଧୁମଙ୍ଗଳ । ଆଜି ମଧୁମିତା ଅନୁଭବ କଲା ପୂର୍ବ ଅପମାନ ପ୍ରତିଶୋଧ ନେବା ପାଇଁ ପୁଣି ଏକ ଚାପୁଡ଼ା ସତେକି ମାରିଲା ମଧୁମଙ୍ଗଳ । ଅହେତୁକ କୋହରେ ଛାତି ତାର ଝଣ୍ ଝଣ୍ କରି ଉଠିଲା ।

କଲେଜରେ ବି ତା'ପାଇଁ ଆଜି ସମସ୍ତେ ବିମୁଖ । ସତେକି ଲେଡ଼ିଜ୍ କମନ୍‌ରୁମ୍‌ରେ ତାର ସାଥିମାନେ ଯେପରି ତାକୁ ଅବଜ୍ଞା କରୁଛନ୍ତି । ସମସ୍ତଙ୍କ ମୁହଁରେ ମଧୁମଙ୍ଗଳର କଥା । ମଧୁମଙ୍ଗଳର ପ୍ରଶଂସା । ସାରା କଲେଜ ଆଜି ମଧୁମଙ୍ଗଳମୟ ହୋଇଯାଇଛି । ଆଜି ମଧୁମିତା ହୋଇଛି ସମସ୍ତଙ୍କ ପାଖରେ ଅବାଞ୍ଛିତା, ଅପାଂକ୍ତେୟ, କିନ୍ତୁ ମଧୁମିତା ମନରେ ତ ଏଥିପାଇଁ କୌଣସି କ୍ଷୋଭ ଆସୁନାହିଁ ଆଜି ବରଂ ମଧୁମଙ୍ଗଳର ପ୍ରଶଂସାରେ କିପରି ଉଲ୍ଲସିତା ହୋଇ ଉଠୁଛି ସେ । କାଲିର ଘୃଣିତା ମଧୁମଙ୍ଗଳ ଆଜି ତା ପାଖରେ ଏକ ନୂତନ ରୂପ ନେଇ ଛିଡ଼ା ହୋଇଛି । ନା, ଯେପରି ହେଉ ମଧୁମଙ୍ଗଳକୁ ନଜର କରିବାକୁ ପଡ଼ିବ ! ମଧୁମଙ୍ଗଳର ଅବଜ୍ଞାଭାବ ତା ପକ୍ଷରେ ଅସହ୍ୟ । ମନେ ମନେ ଶପଥକଲା । ମଧୁମିତା କଳେ ବଳେ କୌଶଳେ ଯେପରି ବି ହେଉ ମଧୁମଙ୍ଗଳକୁ ନଜର କରିବାକୁ ହେବ । ତା ମନ ଜୟ କରିବାକୁ ହେବ ।

ସତକୁ ସତ ମଧୁମିତା ତା ଶପଥରେ ଖୁବ୍ ଶୀଘ୍ର ସଫଳକାମ ହୋଇଥିଲା । ମଧୁମଙ୍ଗଳ ସହ ତାର ସମ୍ପର୍କ ଖୁବ୍ ଶୀଘ୍ର ଘନିଷ୍ଠ ହୋଇ ଉଠିଲା । ସମ୍ପର୍କ ଏତେ ଘନିଷ୍ଠ ହୋଇ ଉଠିଲା ଯେ ଦୁହେଁ ପରସ୍ପରକୁ ବିବାହ କରିବାକୁ ଏକ ପ୍ରକାର ସ୍ଥିର କରି ନେଲେ । ମାତ୍ର ଦୁହିଁଙ୍କର ସ୍ୱପ୍ନର ମିନାର ସେତିକିବେଳେ ଭାଙ୍ଗିଗଲା, ଯେତେବେଳେ ମଧୁମିତାର ବାପା ଏକଥା ଶୁଣି ମଧୁମିତାକୁ ମଧୁମଙ୍ଗଳ ସହ ମିଶିବାକୁ ବାରଣ କରିଦେଲେ ଏବଂ ତାର ବିବାହ ସ୍ଥିରକଲେ ଧ୍ରୁବବ୍ରତ ମହାପାତ୍ର I. A. S ଙ୍କ ସହିତ ।

"ଚାଲ ଆମେ ଏ ସହରଛାଡ଼ି ଅନ୍ୟଆଡ଼େ ଚାଲିଯିବା ।" କଲେଜରୁ ଫେରିବା ବାଟରେ ମଧୁମଙ୍ଗଳକୁ ଦେଖି ଏ ପ୍ରସ୍ତାବ ରଖିଲା ମଧୁମିତା ।

"କାହିଁକି ? ପାଠ ପଢ଼ାଘରୁ ହଠାତ୍ ସହରଘରୁ ଗୃହଳିଯିବାକୁ ମନ ହେଲା କାହିଁକି ?" ମଧୁମଙ୍ଗଳର ଅତ୍ତ ସୋଜା ପ୍ରଶ୍ନ ।

"ବାପା ମୋତେ ତମ ସହିତ ମିଶିବାକୁ ମନାକରିଛନ୍ତି । ମୋର ବିବାହ ସ୍ଥିର କରିଛନ୍ତି ।" ମଧୁମିତା କଣ୍ଠରେ ବେଦନାର ସ୍ପଷ୍ଟ ଆଭାସ ।

"ମାନେ ତମେ ତମ ବାପାଙ୍କୁ ସବୁକଥା କହିଲ ନାହିଁ । ଆମେତ ଠାକୁରଙ୍କୁ ସାକ୍ଷୀରଖି ପରସ୍ପରକୁ ବିବାହ କରି ସାରିଛେ ।" ମଧୁମଙ୍ଗଳ କପରି ବୋକାଙ୍କଭଳି ପ୍ରଶ୍ନକଲା ।

ସେଇଥି ପାଇଁ ବାପା ବିରକ୍ତ ହୋଇ ମୋ ବିବାହ ଏତେ ଶୀଘ୍ର ସ୍ଥିର କରିନ୍ତନ୍ତି । ତମେ ଯଦି ମୋତେ ଦୂରକୁ ନ ନେଇ ପଳେଇବ ମଧୁ ! ମୋର ଭୟ ହେଉଛି, ସେମାନେ ମୋତେ ତମଠାରୁ ଦୂରେଇ ନେବେ । ମୁଁ, ନିରୁପାୟ ମଧୁ । ତମେ ମୋତେ ସାହାଯ୍ୟ କର—ମଧୁମିତା ସତେକି କାନ୍ଦି ପକାଇବ ।

— "ମୁଁ ଖାଲି ନୁହେଁ ମିତା ବା ମାତୃହୀନ ନୁହେଁ । ତମ ବାପାଙ୍କୁ ମୁଁ ନିଜେ ଯାଇଁ ସବୁ କହିବି । ସବୁ ଶୁଣି ଯଦି ତମ ବାପା ଆମକୁ ଆମର ଭବିଷ୍ୟତ ଗଠନରେ ବାଧା ଦିଅନ୍ତି, ତେବେ ମୁଁ—ମୁଁ ସବୁଦିନ ପାଇଁ ତମ ବାଟରୁ ଦୁରେଇ ଯିବି ।" ମଧୁମଙ୍ଗଳ କଣ୍ଠରେ ବି କ୍ରନ୍ଦନର ନିର୍ଯ୍ୟାସ ।

"କିନ୍ତୁ ମୁଁ । ମୁଁ କ'ଣ କରିବି, ତମକୁ ଛାଡ଼ି ମୁଁ ବଞ୍ଚିବି କପରି ମଧୁ । ମୋତେ ଯେ ସେମାନେ ତିଳ ତିଳ କରି ହତ୍ୟା କରିବାକୁ ବସିଛନ୍ତି । ନିଜର କୋହ ସମ୍ଭାଳି ପାରିଲାନି ଆଉ ମଧୁମିତା । ଉଚ୍ଛ୍ୱସିତ କୋହକୁ ଦମନ କରିବାକୁ ଚେଷ୍ଟାକରିବାକୁ ଯାଇଁ ତା ପାଟିରୁ କପରି ଏକ କରୁଣ କମାକାର ଶବ୍ଦ ବାହାରି ଆସିଲା ! ଠିକ୍ ସେହି ସମୟରେ ଏକ ଗାଡ଼ି ଆସି ସେ ଦୁହିଁଙ୍କ ପାଖରେ ବ୍ରେକ୍ କଷିଲା । ଆତଙ୍କରେ ଶିହରି ଉଠିଲା ମଧୁମିତା । ଆଗରେ ତାର ସତେକି ଏକ ଭୟଙ୍କର ମୃତ୍ୟୁକୁ ଦେଖୁଛି ସେ । ଗାଡ଼ିରୁ କପରି ଏକ ରୋଷକଷାୟିତ ଆଖିନେଇ ଓହ୍ଲେଇ ଆସୁଛନ୍ତି ତାର ବାପା ।

"ତୋତେ ମୁଁ ହଜାରଥର କହିଛି ନା ରାସ୍ତାରେ ଗଲାବେଳେ ଏପରି ବାଜେ ଲୋକମାନଙ୍କ ସହ ମିଳାମିଶା କରିବୁ ନାହିଁ ବୋଲି ! ନିଜର Standard ନ ରଖିଲେ କଏ ତୁମକୁ ସମ୍ମାନ ଦେବେ ନାହିଁ । ଏ ସେହି

ଟୋକାଟା । ଗୋଟାଏ Third rate ଲୋଫର୍ । ତା ସହିତ ଏତେ ମିଳାମିଶାକୁ ମୁଁ ପସନ୍ଦ କରେନା··· ।"

"ଯେଉଁମାନେ ବଡ଼ଲୋକଙ୍କର ଉଚ୍ଛିଷ୍ଟଲୋଭୀ ପିମ୍ପି ମଣିଷକୁ ଘୃଣା କରନ୍ତି, ମୁଁ ବି ସେମାନଙ୍କୁ ଘୃଣା କରେ । ଆପଣ ହୁଏତ ଜାଣନ୍ତି ନାହିଁ । ଆମେ ପରସ୍ପରକୁ ଭଲ ପାଉ ।"

"Shutup you Scoundrel", ମଧୁମଙ୍ଗଳ କିଛି ଭାବିବା ପୂର୍ବରୁ ତା ଗାଲରେ ଏକ ଟାଣ ଚାପୁଡ଼ା ବାଜିଲା । ମାତ୍ର ଏ ଚାପୁଡ଼ା ବସିବା ପୂର୍ବରୁ ଖୁବ୍ ଶକ୍ତ ଭାବରେ ମଧୁମିତା ବାପାଙ୍କ ହାତକୁ ଧରି ପକାଇଲା ମଧୁମଙ୍ଗଳ ।

"ବୟସର ମୁଁ ଅସମ୍ମାନ କରେନା, କିନ୍ତୁ ପଦବୀର ଅହଙ୍କାରକୁ ମୁଁ ଆଦୌ ସହିପାରେନା । ଆପଣମାନଙ୍କ ଭଳି ବଡ଼ ଲୋକମାନଙ୍କର ମାଡ଼ ସହିବା ତ ଆମର ନିତିଦିନିଆ କଥା । ହେଲେ ଏ ପଖାଳଖିଆ ହାତର ସ୍ୱାଦ କ'ଣ ଆପଣ ଜାଣନ୍ତି ନାହିଁ, ତେବେ···"

ମଧୁମିତାର ବାପା ଝଟକାରେ ମଧୁମଙ୍ଗଳର ଶକ୍ତ ହାତରେ ବିବଶ ହୋଇ ଛିଡ଼ା ହୋଇଥିଲେ । କ୍ରୋଧରେ ସମ୍ପୂର୍ଣ୍ଣ ପାଗଳ ହୋଇ ଉଠୁଥିଲେ ସେ । ମାତ୍ର ନିରୁପାୟ, ବଜାରସାରା ଲୋକ କପରି ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଏ ଦୃଶ୍ୟ ଦେଖୁଥିଲେ । ଜଣେ ପ୍ରଭାବଶାଳୀ ଲୋକ କପରି ଅସହାୟ ହୋଇ ଛିଡ଼ା ହୋଇଥିଲେ । ସେସବୁ ଦେଖି ଲମ୍ବା କଳିଆ ଟୋକା ଦଳେ ଦାନ୍ତ ନିକୁଟି ହସୁଥିଲେ । ସତରେ ମଧୁମିତା ଆଉ ତା ବାପାଙ୍କ ପାଇଁ ଏ ଏକ ଅସ୍ୱାଭାବିକ ଅବସ୍ଥା ହୋଇ ଉଠିଥିଲା । ଆତଙ୍କରେ ଶିହରି ଉଠୁଥିଲା ମଧୁମିତା, ଯଦି ସବୁ ଲୋକଙ୍କ ଆଗରେ ମଧୁମଙ୍ଗଳ ତା ସହିତ ତାର ସମ୍ପର୍କ କଥା କହି ବସେ । କ'ଣ ଭାବିବେ ଲୋକମାନେ, କ'ଣ ଭାବିବ ତାର ବାପା । ହେ ଭଗବାନ୍, ଏ ବିପଦରୁ ରକ୍ଷା କର ··

'Please ମଧୁ, ଏ ରାସ୍ତାରେ ଏପରି କଥାବାର୍ତ୍ତା କଲେ ଲୋକେ କ'ଣ କହିବେ । ବାପା, ଚାଲନ୍ତୁ···" ଭୟଭୀତ କଣ୍ଠସ୍ୱର ମଧୁମିତାର ।

"ନା—ମୁଁ ଆଜି ତୁମେ ମିତା, ସବୁ କଥାର ସମାଧାନ ଏଇଠି ହୋଇଯାଉ । ମୁଁ ରାସ୍ତାର ମଣିଷ, ରାସ୍ତା ଲୋକଙ୍କ ଆଗରେ କୌଣସି

ସଙ୍କୋଚ ମୋର ନାହିଁ । ମହାନ୍ତି ସାହେବ, ମୁଁ ମିତାକୁ ଭଲ ପାଏ··· ଆଜିମ···

"Please ମଧୁ ଏଇଟା ଗପ୍ପା···" ଆତଙ୍କରେ ଶିହରି ଉଠିଲା । ମଧୁମିତା···

"You stupid···କୋଦଣ୍ଡ, ଥାନାରେ ଖବର ଦିଅ । I will teach him a lesson, କ'ଣ ଭାବିଛୁ ତୁ । ମିତା ତୋତେ ଭଲପାଏ, ସୌଖିନ୍‌ରେ କେତେ କୁକୁର ପଳାଯାଏ । ତା ବୋଲି କୁକୁର ମୁଣ୍ଡ ଉପରକୁ ଉଠିବ ? No Never, ତୋତେ ଆଜ ପ୍ରେମ ମଧୁ ଚଖାଉଛି । ମିତା, ଯା—ଗାଡ଼ିରେ ବସ···" କଠୋର ନିର୍ଦ୍ଦେଶ ମିତା ବାପାଙ୍କ କଣ୍ଠରେ ।

"ନା—ମିତା, ଜବାବ୍ ଦେଇଯାଅ । ତୁମ ଜବାବ୍ ଉପରେ ଆମର ସମ୍ପର୍କ ନିର୍ଭର କରୁଛି, ମଧୁମଙ୍ଗଳ କଣ୍ଠରେ ଦୃଢ଼ତା ।

ଓଲ୍ଟା ଆଖି ତୋଳି ମଧୁମଙ୍ଗଳକୁ ଚାହିଁଲା ମଧୁମିତା, ମାତ୍ର ତା କଣ୍ଠରୁ କିଛି ବାହାରିପାରୁ ନ ଥିଲା । ଏକ ଦିଗରେ ତା ବାପାଙ୍କର ରୋଷପୂର୍ଣ୍ଣ ଆଖି, ଅନ୍ୟ ଦିଗରେ ତାର ପ୍ରଣୟୀ ମଧୁମଙ୍ଗଳର ନିର୍ଦ୍ଦେଶ । କ'ଣ କରିବ ସେ । ଚାରିଦିଗରୁ ଲୋକ ଆସି ପାଖରେ ଭିଡ଼ ହୋଇ ସାରିଲେଣି,କପରି ଲଜ୍ୟା, ସଙ୍କୋଚ ଅଭିମାନରେ ଫାଟି ପଡ଼ୁଥିଲା ବଗୁଷା । କିଛି କାହାକୁ ନ କହି ଧୀରେ ଆସି ଗାଡ଼ିରେ ବସିଲା ସେ । ମଧୁମଙ୍ଗଳ ଚାହିଁଲା ମଧୁମିତାକୁ, ଆଖିରେ ତାର ବିସ୍ମୟ । ହତାଶା—

"ମଧୁମିତା, କିଛି କୁହ ମଧୁ, ତୁମ ବାପାଙ୍କୁ ସବୁକଥା କୁହ···" ବିକଳ ଅନୁନୟ ମଧୁମଙ୍ଗଳ କଣ୍ଠରେ । ମାତ୍ର ମଧୁମିତା ସତେଅଲା ପଥର ପାଲଟି ଯାଇଛି । ତଳକୁ ମୁହଁକରି ସ୍ଥାଣୁ ଭଳି ବସିରହିଲା ସେ ।

"ଏ ଟୋକା, ଗାଡ଼ି ପାଖକୁ ଯାଆନା କହୁଛି । ଏ ନ ହେଲେ ପରିଣତି କ'ଣ ହେବ ଜାଣିବୁ, ଦୃଢ଼ କଣ୍ଠସ୍ୱର ମଧୁମିତା ବାପାଙ୍କର । ଏହି ସମୟରେ ପୋଲିସ ଆସି ପହଞ୍ଚିଗଲେ । ମହାନ୍ତି ସାହେବଙ୍କୁ ନମସ୍କାର କରି ଆଦେଶ ଅପେକ୍ଷାରେ ରହିଲେ ।

"ଶୁଣନ୍ତୁ ସିହ୍ନାବାବୁ ! ଏ ଟୋକା ଆଜକାଲି ଦାଦା ସାଜିଛି । କଲେଜରେ ମୋ ଝିଅ ସହିତ ଖରାପ ବ୍ୟବହାର କରିଛି, ମୋ ଝିଅ ତାର

ପ୍ରତିବାଦ କରିବାରୁ ଏ ବସ୍ତାରେ ମୋ ଝିଅକୁ ଅଟକାଇ ଅତି ଅଶ୍ଳୀଳ ବ୍ୟବହାର କରୁଛି । ମୁଁ କହିବାରୁ ମୋତେ ମାରିବାକୁ ଧମକ ଦେଉଛି, ଏ ଲୋକମାନେ ବି ଦେଖିଛନ୍ତି । ମୋ ହାତ ଧରି ଟଣାଟଣି କରୁଛି···" ପୋଲିସ Sub-Inspector ସିହ୍ନାଙ୍କୁ ଏତକ କହିଲେ ମହାନ୍ତି ସାହେବ ।

ଏ କଥା କ'ଣ ସତ ବାବୁ···" ମଧୁମଙ୍ଗଳକୁ ପ୍ରଶ୍ନ କଲେ ସିହ୍ନାବାବୁ ।

"ତାଙ୍କ ଝିଅକୁ ପଚାରନ୍ତୁ" ମଧୁମଙ୍ଗଳର ନିର୍ଭିକ ଉତ୍ତର । ସେ ଜାଣିଥିଲା ମଧୁମିତା ନିଶ୍ଚୟ ସତକଥା କହିବ । ମହାନ୍ତି ସାହେବଙ୍କର I. A. S. ଦମ୍ଭକୁ ଚୂର୍ଣ୍ଣ କରିବ । ମାତ୍ର ହତାଶ ହେଲା ମଧୁମଙ୍ଗଳ, ସିହ୍ନାବାବୁ ବାରମ୍ବାର ପଚାରିଲେ ମଧ୍ୟ ମଧୁମିତା ତଳକୁ ମୁହଁପୋତି ନୀରବ ରହିଲା ।

"ସତ କୁହ ମିତା, ତୁମ ବାପାଙ୍କର ଅଭିଯୋଗ ସତ ନୁହେଁ ବୋଲି ସମସ୍ତଙ୍କୁ ଜଣାଇ ଦିଅ । ଆମ···"

"ବାହ୍, ଥାଉ—ଯଥେଷ୍ଟ ଅଭିନୟ ହୋଇଛି । ଏ ଲୋକଙ୍କ ଆଗରେ ବାହାଦୁରି ଦେଖାଅନା, ଯାଆ—" ମଧୁମିତାର ଉତ୍ତରରେ ଚମକିଉଠିଲା ମଧୁମଙ୍ଗଳ । ବିସ୍ମୟରେ ଆଉ ହତାଶାରେ ମୁହଁ ତାର ପାଣ୍ଡୁର ହୋଇଗଲା ।

"ସିହ୍ନାବାବୁ, ଆରେଷ୍ଟ କରନ୍ତୁ ଏ Unsocial creatureକୁ । ଏ ସମାଜରେ ଏମାନେ ଗୋଟା ଗୋଟା ଦୁଷ୍ଟବ୍ରଣ । ସଫାକର ଏମାନଙ୍କୁ···" ମହାନ୍ତିବାବୁ ଗର୍ଜିଉଠିଲେ ।

"ନା ବାପା, ଆମର ଆସନ୍ତୁ ଯିବା । ଭଗବାନ ତାଙ୍କୁ ଦଣ୍ଡ ଦେବେ, ଆସନ୍ତୁ—"

ମହାନ୍ତିବାବୁ ଚାହିଁଲେ ନିଜର ଝିଅକୁ, ମୁହଁରେ ତାଙ୍କର ଗର୍ବର ଚିହ୍ନ । ତାଙ୍କ ଝିଅ ଅଭିଜାତ୍ୟକୁ ଦଳିଦେଇ ପାରେନା, ତେଣୁ ଆଉ କିଛି ନ କହି ଗାଡ଼ିରେ ଯାଇଁ ବସିଲେ ।

"ସିହ୍ନାବାବୁ, ମୁଁ ଅଭିଯୋଗ ପ୍ରତ୍ୟାହାର କରି ନେଉଛି । ଆପଣ ଏଥରକ କ୍ଷମା ଦିଅନ୍ତୁ ଏ ବଦ୍‌ମାସ୍‌ଟାକୁ, ଆସୁଛି···"

ଧୂଳି ଉଡ଼େଇ ଗାଡ଼ି ଆଗକୁ ଚାଲିଗଲା, ମଧୁମିତା ଚାଲିଗଲା ଗାଡ଼ିରେ ଆଉ ମଧୁମଙ୍ଗଳ—ଅତି ଅସହାୟ ଭାବରେ ଚାହିଁଲା ଆଗକୁ । ଚାରିଆଡ଼େ ଅନେକ ଅନୁସନ୍ଧିତ୍ସୁ ଆଖି ତାକୁ କପଟର ତାଚ୍ଛଲ୍ୟ ଭାବରେ ଚାହିଁରହିଛନ୍ତି । ଆଃ—ବାମନ ହୋଇ ଚନ୍ଦ୍ର ଧରିବାକୁ ମନକରି ବିଚରା ଖୁବ୍ କଚଡ଼ା ଖାଇଛି । କିଛିକ୍ଷଣ ତଳେ ଯୋଉ ଝିଅ ତା ସହ ଘରଛାଡ଼ି ପଳେଇ ଯିବବୋଲି କହୁଥିଲା, ସେହି ଝିଅ ଏତେ ଲୋକଙ୍କ ଆଗରେ ତାକୁ କେତେ ଶ୍ଳେଷ କରିଦେଇ ଚାଲି ନ ଗଲା ସତେ । ଖୁବ୍ ଜୋରରେ କାନ୍ଦିବାକୁ ମନ ହେଉଥିଲା ତାର, ମୁଣ୍ଡପିଟି ଫଟେଇ ଦେବାକୁ ମନ ଚାହୁଁଥିଲା, ହେଲେ···

"ଆଉ ଏଠି ଛିଡ଼ାହୋଇ ସିନ୍ କରନ୍ତୁନି ଆଜ୍ଞା, ଯାଆନ୍ତୁ" ସିହ୍ନାବାବୁ ମଧୁମଙ୍ଗଳକୁ ଆଗକୁ ଚାଲିଯିବାକୁ ନିର୍ଦ୍ଦେଶ ଦେଉଥିଲେ ମଧୁମଙ୍ଗଳ ଜଣେ ପରାସ୍ତ ସୈନିକ ଭଳି ଧୀରେ ଅତି ଧୀରେ ଆଗକୁ ଯାଉଥିଲା । ତା ଜୀବନର ସମସ୍ତ ସ୍ୱପ୍ନ, ଭବିଷ୍ୟତର ରଙ୍ଗୀନ୍ କଳ୍ପନା ସବୁ ଯେପରି ଧୂଳିସାତ୍ ହୋଇ ଯାଇଥିଲା । ମାନସପଟରେ ତାର ଭାସୁଥିଲା ମଧୁମିତାର ମୁହଁ, ବିବାହ ବେଶରେ ଖୁବ୍ ସୁନ୍ଦର ଦିଶୁଛି ଆଉ ତାକୁ ଆଲିଙ୍ଗନ କରୁଛି ଆଉ ଜଣେ ଯୁବକ । ଆଃ—ବେଦନା ଆଉ ବ୍ୟଥାରେ ଜର୍ଜରିତ ହୋଇ ଅସହ୍ୟ ଦହନ ଜ୍ୱାଳାରେ ଜଳୁଥିଲା ମଧୁମଙ୍ଗଳ । ବଡ଼ଲୋକ ଝିଅର ମନ କପଟର ଚହଲିବ ବଗୁଲା । ଏତେଦିନ ଶିଉଳି ରାସ୍ତାରେ ଅଣନିଶ୍ୱାସୀ ହୋଇ ଛୁଟୁଥିଲା ସେ । ଆଜି ଏକ ଶକ୍ତ କଚଡ଼ାଖାଇ ଆଉ ଉଠିପାରୁନି ସେ । ଖାଲି ଛଟପଟ ହେଉଛି, ଯୁଗଯନ୍ତ୍ରଣାର ଅହେତୁକ ବିସ୍ଫୋରଣରେ ଫାଟି ଖଣ୍ଡ ଖଣ୍ଡ ହୋଇ ଯାଉଛି ତାର ମନ ।

ଆଉ ଠିକ୍ ସେହି ସମୟରେ ଦୂର ଆକାଶରେ ଖଣ୍ଡେ କଳାହାଣ୍ଡିଆ ମେଘ ସହ ଧକ୍କା ଖାଇ ରୂପସୀ ବାଦଲ ଖଣ୍ଡେ ଚୁର୍ ଚୁର୍ ହୋଇ ଝରିପଡ଼ିଲା ତଳକୁ, ଆଃ—ମେଘ କନ୍ୟାର ଶୀତଳ ସ୍ପର୍ଶ ବି ଆଜି ମଧୁମଙ୍ଗଳ ପ୍ରାଣରେ ଶୀତ୍କାର ତୋଳୁ ନାହିଁ ବରଂ ଦେହ ମନ ସବୁ ତାର ଜଳୁଛି । ସେ ଜଳୁଛି, ଆଉ ସେହି ଦହନ ଭିତରେ ମଧୁମଙ୍ଗଳର ସୁନେଲି ଭବିଷ୍ୟତ ଜଳି ଭସ୍ମ ହେଉଛି ।

●